# ଜାତକ ଗଳ୍ପ

ଭଗୀରଥି ନେପାକ

ସୁଧାଂଶୁ ପ୍ରକାଶନ
କଟକ—୯

# ଜାତକ ଗଳ୍ପ



ଲେଖକ

ଶ୍ରୀ ଭଗୀରଥି ନେପାକ



ପ୍ରକାଶକ

ସୁଧାଂଶୁ ପ୍ରକାଶନ
କଟକ—୯



ପରିବେଷକ

ଶ୍ରୀନିବାସ ଗୁରୁ
ଗୁରୁଜୀ ବୁକ୍‌ଷ୍ଟଲ
କଟକ—୯



ପ୍ରଥମ ପ୍ରକାଶ—୧୯୮୫



ମୁଦ୍ରଣ

କୋଣାର୍କ ଇଣ୍ଟରପ୍ରାଇଜର୍ସ
କଟକ—୯



ମୂଲ୍ୟ—୪୫,୦୦

# ପୁସ୍ତକ ସମ୍ପର୍କରେ

ବୌଦ୍ଧଧର୍ମ ଅଧୁନା ପୃଥିବୀରେ ଏକ ବ୍ୟାପକ ପ୍ରଚଳିତ ଧର୍ମ । ବୌଦ୍ଧ ଧର୍ମର ପ୍ରଚାରକ ରାଜପୁତ୍ର ଗୌତମ ପୃଥିବୀର ନରନାରୀଙ୍କୁ ଦୁଃଖ ଭାରରୁ ଲାଘବ କରିବା ନିମନ୍ତେ; ରାଜ୍ୟ, ସ୍ତ୍ରୀ, ପୁତ୍ର ଓ ପରିବାର ପରିତ୍ୟାଗ କରି ତପସ୍ୟା କରିଥିଲେ । ଅବଶେଷରେ ବିଶେଷ ଜ୍ଞାନ ଲାଭ କରି ବୁଦ୍ଧଦେବ ରୂପେ ପୂଜିତ ହେଲେ ।

ପାଲି ଭାଷାରେ ରଚିତ 'ଜାତକ' ବୌଦ୍ଧଧର୍ମାବଲମ୍ବୀ ମାନଙ୍କର ଏକ ପବିତ୍ରଗ୍ରନ୍ଥ । ଏହି ଗ୍ରନ୍ଥ ଅନୁସାରେ ବୁଦ୍ଧଦେବ ଯେ କେବଳ ମନୁଷ୍ୟ ରୂପରେ ଜନ୍ମ ଗ୍ରହଣ କରିଥିଲେ ତାହା ନୁହେଁ । ସେ ନାନା ପ୍ରକାର ପଶୁପକ୍ଷୀ, ସରୀସୃପ, କୀଟପତଙ୍ଗ ଭାବରେ ଜନ୍ମ ଗ୍ରହଣ କରି ସ୍ୱଜାତିପ୍ର ଜୀବମାନଙ୍କର କଲ୍ୟାଣ ସାଧନ କରୁ କରୁ,ଅବଶେଷରେ ବୁଦ୍ଧଦେବ ହେଲେ । ତାଙ୍କର ପୂର୍ବ ଜନ୍ମର ଅବତାର ମାନଙ୍କୁ ବୋଧିସତ୍ତ୍ୱ କୁହାଯାଏ ।

ଜାତକ ଗଳ୍ପମାନ ଅତ୍ୟନ୍ତ ଶିକ୍ଷାପ୍ରଦ । କୁହାଯାଏ ଯେ, ବୁଦ୍ଧଦେବ ତାଙ୍କ ଜୀବିତାବସ୍ଥାରେ ବନରେ ବା ଅନ୍ୟ ବିହାର ମାନଙ୍କରେ ଅବସ୍ଥାନ କାଳରେ, ସମବେତ ଶିଷ୍ୟ ଓ ଭକ୍ତ ମଣ୍ଡଳୀଙ୍କୁ ଗଳ୍ପ ଛଳରେ ନିଜ ପୂର୍ବଜନ୍ମ ମାନଙ୍କର ଅଭିଜ୍ଞତାପୂର୍ଣ୍ଣ କାହାଣୀମାନ ଶୁଣାଇ, ଧର୍ମତତ୍ତ୍ୱ ଶିକ୍ଷା ଦେଉଥିଲେ । କାହାଣୀ ଛଳରେ ଧର୍ମ ଓ ନୀତିଶିକ୍ଷା ଦେବା ପୃଥିବୀରେ ପ୍ରଥମେ ବୁଦ୍ଧଦେବଙ୍କ ଠାରୁ ଆରମ୍ଭ ହେଲା ।

ଆଶା କରାଯାଏ, ପରିବେଶିତ ଗଳ୍ପମାନ ପାଠକ ପାଠିକା ମାନଙ୍କ ମଧ୍ୟରେ ଆଦୃତ ହେବ । ଏଥିରୁ ଅଧିକାଂଶ ଗଳ୍ପ ଶିଶୁଲେଖା, ଚିରନ୍ତନ, ମନପବନ, ଚକାଚକା ଭଉଁରି, ବାଲି ରାଇଜ ପ୍ରଭୃତି ପତ୍ରିକା ମାନଙ୍କରେ ପ୍ରକାଶ ପାଇଥିଲା । ଏଇ ଅବସରରେ ଉକ୍ତ ପତ୍ରିକା ସମ୍ପାଦକ ମାନଙ୍କୁ ~~[illegible]~~ ସାଧୁବାଦ ଜଣାଉଛି ।

ଶ୍ରୀକ୍ଷେତ୍ର
୭ । ୭ । ୮୧

—ବିନୀତ—
ଭଗୀରଥି ନେପାକ

# ସୂଚୀ

**ବିଷୟ** | **ପୃଷ୍ଠା**

# ଜୀବହତ୍ୟାର ପରିଣାମ

ବହୁକାଳ ପୂର୍ବେ ବାରଣସୀରେ ରାଜା ବ୍ରହ୍ମଦତ୍ତ ରାଜତ୍ବ କରୁଥିଲେ । ସେହି ରାଜ୍ୟରେ ଜଣେ ଜ୍ଞାନୀ ବ୍ରାହ୍ମଣ ବାସ କରୁଥିଲେ । ସେ ବେଦଶାସ୍ତ୍ରରେ ଖୁବ୍ ପାରଙ୍ଗମ ଥିଲେ । ତାଙ୍କ ପାଖରେ ବହୁଛାତ୍ର ଅଧ୍ୟୟନ କରୁଥିଲେ । ହୋମ, ଯଜ୍ଞ ଓ ପୂଜାପାଠ ଇତ୍ୟାଦିରେ ତାଙ୍କର ବହୁ ସମୟ ଅତିବାହିତ ହେଉଥିଲା ।

ଦିନେ ସେ ଗୋଟିଏ ଯଜ୍ଞ କରିବା ପାଇଁ ଛେଳିଟିଏ ନେଇ ଆସି ଶିଷ୍ୟମାନଙ୍କୁ କହିଲେ, ଏହାକୁ ନେଇ ପବିତ୍ର ଗଙ୍ଗା ନଦୀରେ ସ୍ନାନ କରାଇ ଆଣ । ଏହା ବେକରେ ଫୁଲମାଳ ପିନ୍ଧାଇଦିଅ ଓ ମୁଣ୍ଡରେ ସିନ୍ଦୂର ଲଗାଇଦିଅ । ଏହାକୁ ବଳି ଦିଆଯିବ ।

ଶିଷ୍ୟମାନେ ଗୁରୁଙ୍କ କଥା ଅନୁସାରେ ଛେଳିକୁ ନେଇ ଗଙ୍ଗା ନଦୀରେ ସ୍ନାନ କରାଇଲେ ଓ ତା ବେକରେ ଫୁଲମାଳ ଓ ମୁଣ୍ଡରେ ସିନ୍ଦୂର ଲଗାଇ ବେକରେ ଦଉଡ଼ି ବାନ୍ଧି ନଈକୂଳରେ ନେଇ ଛିଡ଼ା କରାଇଲେ ।

ଛେଳିଟି ଗୋଟିଏ ସାମାନ୍ୟ ଛେଳି ନ ଥିଲା । ସେ ତାର ପୂର୍ବଜନ୍ମ କଥାସବୁ ସ୍ମରଣ କରିପାରୁଥିଲା । ସେ ନଈକୂଳରେ ଠିଆ ହୋଇ ଥିବା-ବେଳେ ହଠାତ୍ ଠୋ-ଠୋ କରି ହସିପକାଇଲା । ତା ପରେ କ'ଣ ଭାବିଲା କେଜାଣି, ପୁଣି ବିକଳରେ କାନ୍ଦିବାକୁ ଲାଗିଲା ।

ଏହା ଦେଖି ଶିଷ୍ୟମାନେ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଛେଳିକୁ ପଚାରିଲେ, ତୁ ବର୍ତ୍ତମାନ ଖୁବ୍ ଯୋରରେ ହସୁଥିଲୁ, ପୁଣି କାନ୍ଦିଲୁ କାହିଁକି ? ଛେଳିଟି କହିଲା, ସେ ବହୁତ କଥା । ଏଠାରେ କ'ଣ କହିବି ? ଚାଲ ତୁମ ଗୁରୁଙ୍କ ପାଖକୁ , ତାଙ୍କର ଆଗରେ ମୁଁ ସବୁକଥା କହିବି ।

ଏହା ଶୁଣି ଶିଷ୍ୟମାନେ ଛେଳକୁ ନେଇ ଗୁରୁଙ୍କ ନିକଟରେ ପହଞ୍ଚିଲେ ଏବଂ ସମସ୍ତ ଘଟଣା ବର୍ଣ୍ଣନା କଲେ । ସବୁ ଶୁଣି ବ୍ରାହ୍ମଣ ଛେଳକୁ ହସିବାର ଓ କାନ୍ଦିବାର କାରଣ ପଗ୍ଚରିଲେ ।

ଛେଳଟି ତାର ପୂର୍ବ ଜନ୍ମର ସବୁ ଘଟଣା ମନେ ପକାଇ କହିଲା— ପୂର୍ବ ଜନ୍ମରେ ମୁଁ ମଧ୍ୟ ଜଣେ ବେଦଜ୍ଞ ବ୍ରାହ୍ମଣରୂପେ ଜନ୍ମ ହୋଇଥିଲି । ତୁମପରି ଗୋଟିଏ ଯଜ୍ଞ କରିବା ପାଇଁ ମୁଁ ଗୋଟିଏ ଛେଳ ଆଣି ତାକୁ ବଧ କରିଥିଲି । ସେଥିପାଇଁ ମୋ କପାଳରେ ଲେଖି ଦେଇଥିଲେ ଯେ, ମୁଁ ପାଞ୍ଚ ଶହଥର ଛେଳ ରୂପରେ ଜନ୍ମ ନେବି; ଏବଂ ପାଞ୍ଚଶହଥର ମୋର ମୁଣ୍ଡ କଟାଯିବ । ଏହା ପୂର୍ବରୁ ଚାରିଶହ ଅନେଶତ ~~ମୋର ମୁଣ୍ଡ~~ ଥର ମୋର ମୁଣ୍ଡ କଟା ସରିଛି । ଆଜି ତୁମର ହାତରେ ପାଞ୍ଚଶହ ଥର ପୂର୍ଣ୍ଣ ହେବ । ମୁଁ ଏ ଜନ୍ମରୁ ଉଦ୍ଧାର ପାଇବି । ସେଥିପାଇଁ ମୁଁ ଖୁସିରେ ହସୁଥିଲି । କିନ୍ତୁ ପରେ ପରେ ତୁମ କଥା ଚିନ୍ତା କରି ମୋର ଦୁଃଖ ହେଲା । ମୁଁ ଗୋଟିଏ ଥର ଯଜ୍ଞ ପାଇଁ ଗୋଟିଏ ଛେଳର ମୁଣ୍ଡ ହାଣିବାରୁ ମୋତେ ପାଞ୍ଚ ଶହଥର ମୁଣ୍ଡ ହରାଇବାକୁ ପଡ଼ିଲା । ବର୍ତ୍ତମାନ ତୁମେ ମୋର ମସ୍ତକ ଛେଦନ କରିବାକୁ ଯାଉଛ । ତେଣୁ ତୁମକୁ ମଧ୍ୟ ମୋପରି ପାଞ୍ଚ ଶହଥର ପୁନର୍ଜନ୍ମ ଗ୍ରହଣ କରିବାକୁ ପଡ଼ିବ ଓ ପାଞ୍ଚ ଶହଥର ତୁମର ମସ୍ତକ ଛେଦନ ହେବ । ତୁମର ଏ ଶୋଚନୀୟ କଥା ଭାବି ମୋତେ କାନ୍ଦ ମାଡ଼ିଲା ।

ଏହା ଶୁଣି ବ୍ରାହ୍ମଣର ଆଖି ଖୋଲିଗଲା । ସେ ଚିନ୍ତିତ ହୋଇପଡ଼ିଲେ । ସେ ଛେଳକୁ କହିଲେ, ତୁମେ ଭୟ କର ନାହିଁ । ତୁମେ ନିଜ ବାଟରେ ଚାଲିଯାଅ ।

ଛେଳଟି କହିଲା, ଏ କ'ଣ କହୁଛ ବ୍ରାହ୍ମଣ ? ତୁମେ ମୋତେ ହତ୍ୟା କର ବା ନକର, ଆଜି ମୋର ହତ୍ୟା ଯୋଗ ଅଛି ।

ବ୍ରାହ୍ମଣ ପ୍ରତିଶ୍ରୁତି ଦେଲେ, ତୁମକୁ ଆଜି ମୁଁ ଜଗି ରହିବି । ତୁମର କୌଣସି ଅନିଷ୍ଟ ହେବ ନାହିଁ ।

ଝେଳ କହିଲ, "ତୁମେ ଯେତେ ଜଗି ରହିଲେ ମଧ୍ୟ, ମୋତେ ରକ୍ଷା କରିପାରିବ ନାହିଁ । କାରଣ ପୂର୍ବ ଜନ୍ମ ପାପର ପରିଣାମ ଆଜି ଅବଶ୍ୟ ଭୋଗ କରିବାକୁ ପଡ଼ିବ । କୌଣସି ଶକ୍ତି ମୋତେ ତହିଁରୁ ରକ୍ଷା କରିପାରିବ ନାହିଁ" ।

ବ୍ରାହ୍ମଣ ସେହି ଛେଳିକୁ ଛାଡ଼ିଦେଇ ଶିଷ୍ୟମାନଙ୍କୁ କହିଲେ—ଦେଖ, ଏ ଛେଳିଟିକୁ ଯେମିତି କେହିହେଲେ ମାରି ନ ପକାଏ । ସେ ନିଜେ ମଧ୍ୟ ଛେଳି ଉପରେ ସତର୍କ ଦୃଷ୍ଟି ରଖିଲେ । ଛେଳିଟି ଦଉଡ଼ିରୁ ଫିଟିଯିବା ସଙ୍ଗେ ସଙ୍ଗେ ଗୋଟିଏ ପାହାଡ଼ ଉପରକୁ ଚଢ଼ିଗଲା ଏବଂ ସେଠାରେ ଥିବା ଗୋଟିଏ କଅଁଳିଆ ଗଛରୁ ପତ୍ର ଖାଇବା ଆଶାରେ ବେକ ଲମ୍ବାଇଲା । ଠିକ୍ ଏତିକବେଳେ ଆକାଶରୁ ବଜ୍ରପାତ ହେଲା । ବଜ୍ରପାତ ଫଳରେ ମୁଣ୍ଡି ଆର ଚଟାଣ ଫାଟିଗଲା ଓ ଛେଳିର ମୁଣ୍ଡ କଟିଗଲା ।

ଏହାପରେ ଲୋକମାନେ ସେଠାରେ ଜମାହୋଇ ଦେଖିଲେ, ଛେଳିର ଜୀବନ ଶେଷ ହୋଇ ଯାଇଛି ।



## ନିର୍ବୋଧ କୋକିଶିଆଳ

ରାଜା ବ୍ରହ୍ମଦତ୍ତ ବାରଣସୀ ରାଜ୍ୟରେ ରାଜତ୍ୱ କଲାବେଳେ, ବୋଧିସତ୍ତ୍ୱ ସେହି ରାଜ୍ୟର ଅରଣ୍ୟ ଭିତରେ ଏକ ସିଂହ ରୂପରେ ଜନ୍ମଲାଭ କରିଥିଲେ । କାଳକ୍ରମେ ସେ ଯୁବକ ଅବସ୍ଥା ପ୍ରାପ୍ତହେଲେ ଓ ସିଂହମାନଙ୍କ ମଧ୍ୟରେ ରାଜା ହେଲେ ।

ସିଂହ-ରାଜ ଏକ ରଜତ ଧବଳ ଗିରି ଗୁମ୍ଫାରେ ବସବାସ କରୁଥିଲେ । ତାଙ୍କ ବସା ପାଖରେ ଏକ କ୍ଷୁଦ୍ରକାୟ କୋକିଶିଆଳି ବାସ କରୁଥିଲା ।

ଥରେ ସେହି ଅରଣ୍ୟରେ ଭୀଷଣ ବର୍ଷା ହେଲା । ବହୁ ସମୟ ବର୍ଷା ହୋଇ ଛାଡ଼ିଯିବା ପରେ ପାଗ ପରିଷ୍କାର ହୋଇଗଲା । ମେଘମୁକ୍ତ ଆକାଶ ଓ ପରିଷ୍କାର ପାଗ ଦେଖି ଅରଣ୍ୟ ମଧ୍ୟରେ ବସବାସ କରୁଥିବା ସିଂହମାନେ ଏକତ୍ରିତ ହେଲେ ଓ ସେମାନେ ସେମାନଙ୍କ ରାଜାଙ୍କର ଗୁମ୍ଫା ସାମନାରେ ଆନନ୍ଦରେ ମଉଜ ମଜଲିସ କରିବାକୁ ଲାଗିଲେ । କୌଣସି କୌଣସି ସିଂହ ଆନନ୍ଦାତିଶଯ୍ୟରେ ଗର୍ଜନ କରି ଅରଣ୍ୟବକ୍ଷ ପ୍ରକମ୍ପିତ କଲାବେଳେ ଆଉ କେତେକ ସିଂହ ହୁଙ୍କାର ଛାଡ଼ିବାକୁ ଲାଗିଲେ ।

ସିଂହରାଜ ନିକଟରେ ବାସ କରୁଥିବା କୋକିଶିଆଳଟି ସେତେବେଳେ ସିଂହମାନଙ୍କର ଗର୍ଜନ ଓ ହୁଙ୍କାର ଶ୍ରବଣ କରୁଥିଲା । ତା ପରେ ସେ ନିଜେ ମଧ୍ୟ ନିଜକୁ ସିଂହମାନଙ୍କ ପରି ବଳବାନ ମନେକଲା ଓ ଭାବିଲା ନିଜେ ମଧ୍ୟ ଭୀଷଣ ଗର୍ଜନ କରି ସିଂହ କୁଳକୁ ଚମକାଇ ଦେବ । ତେଣୁ ତା ଦେହରେ ଥିବା ସବୁବଳ ଏକାଠି କରି ସେ ଭୀଷଣ ଗର୍ଜନ କରିବାକୁ ଲାଗିଲା ।

କୋକିଶିଆଳର ଗର୍ଜନ ଶୁଣି ସିଂହମାନେ ନୀରବ ପାଲଟିଗଲେ ଓ ପରସ୍ପର ମୁହଁକୁ ଚାହିଁବାକୁ ଲାଗିଲେ ।

କିନ୍ତୁ କୋକିଶିଆଳର କଣ୍ଠସ୍ୱର ନୀରବ ହେବାର ନୁହେଁ । ସେ ପୂରା ଦମ୍‌ରେ ରଡ଼ି ଛାଡ଼ୁଥାଏ । ଏପରି ଅବସ୍ଥା ଦେଖି ସିଂହ-ରାଜ ତାଙ୍କର ବୃଦ୍ଧ ପିତାଙ୍କୁ ପ୍ରଶ୍ନ କଲେ, ସିଂହମାନଙ୍କ ଗର୍ଜନ ଶୁଣିବା ପରେ କୋକିଶିଆଳଟି ଖୁବ୍ ଉଚ୍ଚ ସ୍ୱରରେ ଗର୍ଜନ କରିବାକୁ ଲାଗିଲା । କୋକିଶିଆଳର ଗର୍ଜନ ଶୁଣି ସିଂହମାନେ ନୀରବ ରହିଲେ । କିନ୍ତୁ କୋକିଶିଆଳଟି ନୀରବ ହେଉ ନାହିଁ କାହିଁକି ? ସିଂହମାନେ କୋକିଶିଆଳର ଗର୍ଜନ ଶୁଣି କ'ଣ ଭୟରେ ନୀରବ ପାଲଟି ଗଲେ ?

ବୃଦ୍ଧସିଂହ ବୋଧିସତ୍ତ୍ୱଙ୍କୁ ଉତ୍ତର ଦେଲେ, ସିଂହମାନେ କୋକିଶିଆଳ ଅପେକ୍ଷା ଶତ ଗୁଣରେ ଅଧିକ ବଳବାନ, ଏଥିରେ ତିଳେମାତ୍ର ସନ୍ଦେହ

ନାହିଁ । ଏଭଳି ଅବସ୍ଥାରେ ସେମାନେ କୋକଶିଆଳର ଗର୍ଜନ ଶୁଣି ଭୟ କରିବାର କୌଣସି କାରଣ ନାହିଁ । ତେବେ କୋକଶିଆଳର ନିର୍ବୋଧତା କଥା ସ୍ମରଣ କରି ସେମାନେ ଖୁବ୍ ଲଜ୍ଜିତ ହୋଇ ଉଠିଲେ । ତେଣୁ ପୂର୍ବପରି ମନ ଆନନ୍ଦରେ ସେମାନେ ଗର୍ଜନ କଲେ ନାହିଁ । କିନ୍ତୁ ନିର୍ବୋଧ କୋକଶିଆଳ ଅତି ନିର୍ଲଜ୍ଜ ଭାବରେ ରଡ଼ି ଛାଡୁଥିଲା ଓ ମନେ ମନେ ଭାବୁଥିଲା, ସେ ସିଂହମାନଙ୍କ ସଙ୍ଗେ ସମାନ କିମ୍ବା ଅଧିକ ବଳବାନ ପାଲଟି ଗଲେ ।

ଏ ଉତ୍ତର ବୋଧିସତ୍ତ୍ୱଙ୍କ ମନକୁ ପାଇଲା, ସେ ମଧ୍ୟ ନୀରବ ରହିବାକୁ ଉଚିତ ମନେକଲେ ।

———

## ପରବୁଦ୍ଧିଆ ପୁରୋହିତ

ରାଜା ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିଲାବେଳେ ବୋଧିସତ୍ତ୍ୱ ରାଜା ବ୍ରହ୍ମଦତ୍ତଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ସେ କ୍ରମେ ବଡ଼ ହୋଇ ଉଚିତ ଶିକ୍ଷା ଲାଭକଲେ ଓ ପିତାଙ୍କର ମୃତ୍ୟୁପରେ ବାରାଣସୀର ରାଜା ହେଲେ ।

ବୋଧିସତ୍ତ୍ୱଙ୍କ ଶାସନ କାଳରେ ପ୍ରଜାମାନେ ସୁଖରେ କାଳଯାପନ କଲେ ।

ସେ ସମୟରେ ବ୍ରାହ୍ମଣ କୁହକ ବୋଧିସତ୍ତ୍ୱଙ୍କ କୁଳ ପୁରୋହିତ ପଣ୍ଡିତ ଥିଲେ । ସେ ନିଜକୁ ଖୁବ୍ ବୁଦ୍ଧିମାନ ଓ ଜ୍ଞାନୀ ମନେକରୁଥିଲେ । କିନ୍ତୁ ସେ ସର୍ବଦା ନିଜ ସ୍ତ୍ରୀଙ୍କ କଥାରେ ପରିଚାଳିତ ହେଉଥିଲେ ।

ଥରେ ରାଜା ପଣ୍ଡିତ ପୁରୋହିତଙ୍କୁ ଗୋଟିଏ ଘୋଡ଼ା ଦାନ କରିଦେଲେ । କେବଳ ଘୋଡ଼ା ନୁହେଁ, ଘୋଡ଼ା ସଙ୍ଗରେ ତାର ଅଶ୍ୱର ଲଗାମ ଓ ବହୁମୂଲ୍ୟ ଅଳଙ୍କାରମାନ ମଧ୍ୟ ଦାନ କଲେ ।

ଘୋଡ଼ାଟି ହୃଷ୍ଟ ପୁଷ୍ଟ, ବଳିଷ୍ଠ ଥିଲା । ସେ ଉତ୍ତମ ଭାବରେ ତାଲିମ ପାଇଥିଲା ।

ଧନଂପଣ୍ଡିତେ ଘୋଡ଼ାରେ ଚଢ଼ି ରାଜାଙ୍କ ପାଖକୁ ଯିବାକୁ ସ୍ଥିର କଲେ । ସେ ତାକୁ ମୂଲ୍ୟବାନ ଅସ୍ତର ଓ ବେଶଭୂଷଣରେ ସୁସଜ୍ଜିତ କରି, ତା'ପିଠିରେ ଚଢ଼ି ରାଜାଙ୍କ ନିକଟକୁ ବାହାରିଲେ ।

ବାରଣସୀର ପ୍ରଜାମାନେ ସେହି ଘୋଡ଼ାକୁ ଦେଖି ଖୁବ୍ ପ୍ରଶଂସା କଲେ । ପରସ୍ପରକୁ କହିଲେ, କି ସୁନ୍ଦର ଘୋଡ଼ା ଦେଖ !

ଘୋଡ଼ାର ପ୍ରଶଂସା ଶୁଣି ପୁରୋହିତଙ୍କ ଛାତି କୁଣ୍ଢେମୋଟ ହୋଇଗଲେ । ସେ ଘରକୁ ଫେରିଆସି ନିଜ ସ୍ତ୍ରୀଙ୍କୁ ଚୁପ୍ ଚୁପ୍ କହିଲେ, ଆହେ ଶୁଣୁଛ ! ବାରଣସୀର ସମସ୍ତେ ଆଜି ଘୋଡ଼ାକୁ ଦେଖି ଖୁବ୍ ପ୍ରଶଂସା କଲେ । ତାକୁ ଦେଖି ଆନନ୍ଦରେ କେତେ ଯେ କଣ କହିଲେ, ସେ କଥା ବର୍ଣ୍ଣନା କରିପାରିବ ନାହିଁ ।

କିନ୍ତୁ ପୁରୋହିତଙ୍କ ସ୍ତ୍ରୀ ଏ କଥା ଶୁଣି ଖୁସି ହୋଇ ପାରିଲେ ନାହିଁ । ପରର ପ୍ରଶଂସା ଶୁଣି ହଜମ କରିନେବା ତାଙ୍କ ଜାତକରେ ନଥିଲା । ତାଙ୍କ ପ୍ରକୃତି ବିଚିତ୍ର ଧରଣର ଥିଲା । ସେ ହଠାତ୍ ଉତ୍ତର ଦେଲେ; ଘୋଡ଼ା ନୁହଁ ମ; ତା'ପିଠିରେ ପଡ଼ିଥିବା ଅସ୍ତର ଦେଖି ସେମାନେ ପ୍ରଶଂସା କରୁଥିଲେ । ତୁମେ ସିନା ବୁଝିପାରିଲ ନାହିଁ, ମୁଁ ସବୁକଥା ଜାଣେ । ଆଜି ତୁମେ ବୁଝିଲ ଓଲଟା । ତୁମେ ବି ସେମିତି ଘୋଡ଼ାର ଅସ୍ତର ଘୋଡ଼େଇ ହୋଇ ଗଲ । ଦେଖିବ; ବାରଣସୀର ସମସ୍ତେ ତୁମକୁ ପ୍ରଶଂସା କରିବେ । ରାଜା ମଧ୍ୟ ଖୁସି ହୋଇଯିବେ ।

ପରବୁଦ୍ଧିଆ, ମାଇପି-ବୋଲକରା ପଣ୍ଡିତେ ନିଜ ସ୍ତ୍ରୀଙ୍କ କଥାକୁ ସତ ମଣିଲେ । ପରଦିନ ଦେହକୁ ସେହି ଘୋଡ଼ା-ଅସ୍ତର ଘୋଡ଼ାଇ ହୋଇ, ଘୋଡ଼ାପରି ଚାଲି ରାଜାଙ୍କୁ ଦେଖା କରିବାକୁ ବାହାରିଲେ ।

ପଣ୍ଡିତଙ୍କ ଭୂଷଣ ଓ ଗମନ ଦେଖି ରାସ୍ତାରେ ଚାଲିଯାଉଥିବା ନର-ନାରୀମାନେ ତାଳିମାରି ହସିଲେ, କିନ୍ତୁ ପଣ୍ଡିତେ ଭାବିଲେ, ତାଙ୍କ ସ୍ତ୍ରୀଙ୍କ କଥା ସତ ହେଲା । ଲୋକମାନେ ତାଙ୍କୁ ପ୍ରଶଂସା କରୁଛନ୍ତି ।

ରାଜା ପଣ୍ଡିତଙ୍କୁ ସେହି ଅଦ୍ଭୁତ ବେଶ ଭୂଷଣରେ ଦେଖି ବିରକ୍ତ ହେଲେ । କହିଲେ; ଏ କି ବେଶ ଧରିଛ ? ପାଗଳ ନା କଣ ?

ଏଥର ପଣ୍ଡିତଙ୍କ ହୋସ ଫେରିଲା । ସେ ଲଜ୍ଜିତ ହେଲେ ଓ ଭାବିଲେ; ପ୍ରକୃତରେ କିଛି ଗୋଳମାଳ ହୋଇଯାଇଛି । ରାସ୍ତାରେ ଲୋକେ ତାଙ୍କୁ ପ୍ରଶଂସା ନକରି ଉପହାସ କରୁଥିଲେ । ତାଙ୍କର ବେଶ ଭୂଷା ଏଥିପାଇଁ ଦାୟୀ । ସେ ତାଙ୍କ ସ୍ତ୍ରୀଙ୍କ କଥା ଶୁଣି ଦେହରେ ଅସ୍ତର ଢୋଡ଼ାଇ ହୋଇ ଆସିବାର ନଥିଲା । ଏଥର ମନେ ମନେ ସେ ନିଜ ସ୍ତ୍ରୀଙ୍କ ଉପରେ ଭୀଷଣ ରାଗିଲେ ଓ ସ୍ତ୍ରୀ ଉପରେ ପ୍ରତିଶୋଧ ନେବାପାଇଁ ତମ ତମ ହୋଇ ଘରକୁ ଫେରିଲେ ।

ବ୍ରାହ୍ମଣୀ ପଣ୍ଡିତଙ୍କୁ ଖଣ୍ଡେ ଦୂରରୁ ଦେଖି ଓ ତାଙ୍କର ତମ ତମ ମୁହଁ ଦେଖି ସବୁକଥା ଅନୁମାନ କରିନେଲେ । ସେ ବୁଝିଲେ ସ୍ୱାମୀ ଘର ଭିତରେ ପାଦ ଦେବା ମାତ୍ରେ ସେ ଯେ କୌଣସି କାଣ୍ଡ ସୃଷ୍ଟି କରିପାରନ୍ତି । ତେଣୁ ଭୟରେ ଲୁଚନିଆଁ ହୋଇ ବାଡ଼ିପଟେ ଦେଇ ବାହାରି ଚାଲିଗଲେ ଓ ରାଜାଙ୍କ ଉଆସରେ ରହିଲେ । ପାଞ୍ଚଦିନ ପରେ ସେ ରାଜାଙ୍କୁ ଗୁହାରି କରିବା ପାଇଁ ସୁଯୋଗ ପାଇଲେ ଓ ସବୁକଥା ଜଣାଇଲେ ।

ବୋଧିସତ୍ତ୍ୱ ବ୍ରାହ୍ମଣୀ ମୁଖରୁ ସବୁକଥା ଶୁଣି ତାଙ୍କୁ ଦୟାକଲେ । ସେ ପରିଚାରକ ହସ୍ତରେ ପୁରୋହିତଙ୍କୁ ଡକାଇ ଆଣିଲେ ଓ ତାଙ୍କୁ ବୁଝାଇ ସୁଝାଇ ଶାନ୍ତ କରିବାକୁ କହିଲେ; ନାରୀମାନେ ସାଧାରଣତଃ ଈର୍ଷା-ପରାୟଣା । ସେମାନେ ନିଜ ବ୍ୟତୀତ କାହାରି ପ୍ରଶଂସା ସହ୍ୟ କରିପାରନ୍ତି ନାହିଁ । ଆପଣ ଆପଣଙ୍କ ସ୍ତ୍ରୀ ଆଗରେ ଢୋଡ଼ୀର ପ୍ରଶଂସା କରିବାରୁ ସେ

ହେବ୍ୟ କରିପାରିବେ ନାହିଁ । ତେଣୁ ଘୋଡା ବଦଳରେ ଘୋଡ଼ା-ଅସ୍ତ୍ରର ପ୍ରଶଂସା କଲେ । ଆପଣ ଶାନ୍ତ ହୁଅନ୍ତୁ ଓ ତାଙ୍କୁ କ୍ଷମା କରନ୍ତୁ ।

କିନ୍ତୁ ରାଜା ତଥାପି ଅଶାନ୍ତ ଥିବା ଦେଖି ବୋଧିସତ୍ତ୍ୱ ପୁଣି କହିଲେ; ଧନୁଗୁଣ ଛିଣ୍ଡିଗଲେ ତାଙ୍କୁ ପୁଣିଥରେ ଯୋଡ଼ ଲଗାଇ ହୁଏ ଯାଇ ପାରୁଛି । ସେ ସେତେବେଳେ ଆପଣଙ୍କ ସ୍ୱାମୀ; ତାଙ୍କୁ କ୍ଷମା କରିଦିଅନ୍ତୁ ।

ପୁରୋହିତ ରୁହକ ଅବୁଝା, ଏକବାଗିଆ ପ୍ରକୃତିର ମଣିଷ ଥିଲେ । ସେ କହିଲେ; ଧନୁର ଛିଣ୍ଡିଲା ରଶିକୁ ଯୋଡ଼ି ଠିକ୍ କରିବା ଅପେକ୍ଷା ନୂଆ ରଶିଟିଏ ବଦଳାଇ ନେବା ଭଲ । ମୁଁ ତା' ସଙ୍ଗରେ ଚଳିପାରିବି ନାହିଁ । ବୋଧିସତ୍ତ୍ୱ ଏହା ଶୁଣି ନୀରବ ରହିଲେ ।

## ସୁପାନ

ବୁଦ୍ଧଦେବଙ୍କ ପୂର୍ବ ଜନ୍ମମାନଙ୍କୁ ବୋଧିସତ୍ତ୍ୱ କୁହାଯାଏ । ସେଥର ବୁଦ୍ଧଦେବ ଏକ ବ୍ରାହ୍ମଣ ଘରେ ଜନ୍ମ ହୋଇଥିଲେ ।

ବ୍ରାହ୍ମଣ ଜଣେ ବନାରସରେ ବାସ କରୁଥିଲେ ।

ରାଜା ବ୍ରହ୍ମଦତ୍ତ ବନାରସରେ ରାଜୁତି କରୁଥିଲେ । ତାଙ୍କ ଅମଳରେ ବନାରସ ରାଜ୍ୟରେ ଶାନ୍ତି ଥିଲା । ପ୍ରଜାମାନେ ସୁଖରେ ରହୁଥିଲେ ।

ବୋଧିସତ୍ତ୍ୱ ବନାରସରେ ଖେଳିବୁଲି ବଡ଼ ହେଲେ । ମା' ବାପା ଭାବିଲେ; ପୁଅ ଏଥର ବଡ ହୋଇଛି । ସେ ପାଠ ପଢ଼ିବା ଉଚିତ ।

ସେତେବେଳେ ତକ୍ଷଶିଳା ଭାରତର ଏକ ବିଖ୍ୟାତ ବିଦ୍ୟାପୀଠ ଥିଲା । ସେଠାରେ ବିଦ୍ୱାନ ଗୁରୁମାନେ ଆଶ୍ରମ କରି ରହୁଥିଲେ । ବିଭିନ୍ନ ସ୍ଥାନରୁ ଛାତ୍ରମାନେ ଆସି ଗୁରୁଙ୍କ ପାଖରେ ଆଶ୍ରମରେ ରହି ବିଦ୍ୟା ଅଧ୍ୟୟନ କରୁଥିଲେ । ବିଦ୍ୟାଶିକ୍ଷା ସମାପ୍ତ ହେବାପରେ ଗୁରୁ ସେମାନଙ୍କୁ ପରୀକ୍ଷା କରୁଥିଲେ । ପରୀକ୍ଷାରେ ପାଶ୍ କଲେ; ଆଶୀର୍ବାଦ ଦେଇ ଘରକୁ ପଠାଇ ଦେଉଥିଲେ ।

ଗୁରୁଙ୍କଠାରୁ ଆଶୀର୍ବାଦ ପାଇ ଫେରି ଆସିଥିବା ଛାତ୍ରମାନେ ସାଂସାରିକ ଜୀବନଯାପନ କରି ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ପାଉଥିଲେ ।

ବାପ ମା' ଠିକ୍ କଲେ, ବୋଧିସତ୍ତ୍ୱଙ୍କୁ ବିଦ୍ୟାଲାଭ ପାଇଁ ତକ୍ଷଶିଳାକୁ ପଠାଇବେ ।

ଦିନ ବାର ନକ୍ଷତ୍ର ଦେଖି ଶୁଭ ବେଳାରେ ବୋଧିସତ୍ତ୍ୱ ତକ୍ଷଶିଳା ଯାତ୍ରାକଲେ ଓ ଗୁରୁଙ୍କ ଆଶ୍ରମରେ କିଛିକାଳ କଟାଇ, ଗୁରୁଙ୍କ ଆଶୀର୍ବାଦ ଲାଭକରି ବନାରସକୁ ଫେରି ଆସିଲେ ।

× × ×

କ୍ରମେ ବୋଧିସତ୍ତ୍ୱଙ୍କ ଖ୍ୟାତି ବଢିଲା । ଜମ୍ବୁଦ୍ୱୀପମଣ୍ଡଳରେ ସେ ଜଣେ ପ୍ରସିଦ୍ଧ ଗୁରୁ ରୂପେ ପ୍ରତିଷ୍ଠା ଅର୍ଜନ କଲେ ।

ସେ ସମୟରେ ବନାରସରେ ଆଉ ଜଣେ ବ୍ରାହ୍ମଣ ଗୃହସ୍ଥ ଥିଲେ । ତାଙ୍କର ଗୋଟିଏ ସୁନ୍ଦରୀ କନ୍ୟା ଥିଲେ । କ୍ରମେ ସେହି କନ୍ୟାମାନେ ବିବାହ ଯୋଗ୍ୟା ହେଲେ । ସେମାନଙ୍କ ରୂପଗୁଣର ପ୍ରଶଂସା ଶୁଣି ଅନେକ ପାତ୍ର ସେମାନଙ୍କୁ ପତ୍ନୀ ରୂପରେ ପାଇବାକୁ ବ୍ୟାକୁଳ ହେଲେ ।

ଅବଶେଷରେ ଚାରିଜଣ ପାତ୍ର ଆସି ସେହି ବ୍ରାହ୍ମଣ ଗୃହସ୍ଥଙ୍କୁ ଦେଖା କଲେ ଓ ସେମାନଙ୍କୁ ଜାମାତା ରୂପେ ଗ୍ରହଣ କରିବାକୁ ଅନୁରୋଧ କଲେ ।

ସେହି ପାତ୍ରମାନଙ୍କ ମଧ୍ୟରୁ ଜଣେ ଶାନ୍ତ, ଦ୍ୱିତୀୟ ଜଣକ ଶିଷ୍ଟ, ତୃତୀୟ ଜଣକ ସୁନ୍ଦର ଓ ଚତୁର୍ଥ ଜଣକ ଯୁବକ ଥିଲେ ।

ବ୍ରାହ୍ମଣଗୃହସ୍ଥ ଦେଖିଲେ, ସେହି ଚାରିଜଣଯାକ ପାତ୍ର ତାଙ୍କର ଜାମାତା ହେବାପାଇଁ ଉପଯୁକ୍ତ । କିନ୍ତୁ କିଏ ସବୁଠୁ ଯୋଗ୍ୟ, ସେ କଥା ସେ ସ୍ଥିର କରି ନପାରି ବୋଧିସତ୍ତ୍ୱଙ୍କର ଦ୍ୱାରସ୍ଥ ହେଲେ ।

ବୋଧିସତ୍ତ୍ୱ ଗୃହସ୍ଥଙ୍କ ମୁଖରୁ ସବୁକଥା ଶୁଣି ଓ ତାଙ୍କର ସେମାନଙ୍କ ସମ୍ପର୍କରେ ଅବହିତ ହୋଇ କହିଲେ, ଶାନ୍ତ ହୁଅ, ହିତୈଷୀଗୃହ; ସୌନ୍ଦର୍ଯ୍ୟ ଓ ଯୌବନ ଏହି ଗୃହେଶ୍ଚିଯାକ ଗୁଣ ମଣିଷର ବଳ୍ଲୁହୂଷଣ ଅଟନ୍ତି । କିନ୍ତୁ ସାଧୁତା ଅର୍ଜନ ପାଇଁ ଏହି ଗୁଣମାନେ ନିଶ୍ଚିତ ଭାବରେ ସାହାଯ୍ୟ କରି ନ ପାରନ୍ତି । ସମସ୍ତ ଗୁଣର ଅଧିକାରୀ ଯେ ନିଶ୍ଚିତ ଭାବରେ ସାଧୁଶୀଳ ଓ ପୁଣ୍ୟବାନ, ଏ କଥା ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ପାରିବ ନାହିଁ । ତେଣୁ ମୋ ମତରେ, ଯେଉଁ ବ୍ୟକ୍ତି ସାଧୁ ଓ ପୁଣ୍ୟାତ୍ମା, ତାକୁ ପରୀକ୍ଷା କର ଓ ସେହି ସାଧୁଶୀଳ ପାତ୍ର ହାତରେ ନିଜର କନ୍ୟାଦାନ କର ।

ବ୍ରାହ୍ମଣ ଗୃହସ୍ଥ ବୋଧିସତ୍ତ୍ୱଙ୍କ ପାଖରୁ ଯୋଗ୍ୟ ପାତ୍ରର ବିବରଣୀ ଶୁଣି ଫେରିଗଲେ ଓ ବିବାହ ପ୍ରାର୍ଥୀମାନଙ୍କ ମଧ୍ୟରୁ ଅଧିକ ଯୋଗ୍ୟ ପାତ୍ର ବାଛି ନିଜର କନ୍ୟାମାନଙ୍କୁ ଅର୍ପଣ କଲେ ।

—※※※—

## ଧୂର୍ତ୍ତ ବିଲୁଆ

ଥରେ ବୋଧିସତ୍ତ୍ୱ ବାରାଣସୀରେ ମୂଷାଜନ୍ମ ଲାଭ କରିଥିଲେ । ସେ ଖୁବ୍ ବୁଦ୍ଧିଆ ଓ ବଳୁଆ ଥିଲେ । ଦେହର ଗଢ଼ଣ ବି କମ୍ ନଥିଲା । ବିଲେଇଠୁ ସେ ବଡ଼ ଦେଖାଯାଉଥିଲେ ।

ସେତେବେଳେ ରାଜା ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିଲେ ।

ବୋଧିସତ୍ତ୍ୱ ବାରାଣସୀ ନିକଟରେ ଥିବା ଏକ ବଣରେ ବାସ କରୁଥିଲେ । ତାଙ୍କ ସଙ୍ଗରେ ଶହ ଶହ ମୂଷା ରହୁଥିଲେ । ସେହି ମୂଷାମାନେ ବୋଧିସତ୍ତ୍ୱଙ୍କୁ ସେମାନଙ୍କ ରାଜା କରିଥିଲେ । ବୋଧିସତ୍ତ୍ୱ ତାଙ୍କ ଆଶ୍ରୟରେ ଥିବା ମୂଷାମାନଙ୍କୁ ନାନା ପ୍ରକାର ବିପଦ ଆପଦରୁ ରକ୍ଷା କରୁଥିବାରୁ, ସମସ୍ତେ ତାଙ୍କୁ ଭକ୍ତି କରୁଥିଲେ । ବୋଧିସତ୍ତ୍ୱ ଯାହା ସବୁ କହୁଥିଲେ, ମୂଷାମାନେ ତାହା ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ।

ଥରେ ଗୋଟିଏ ଧୂର୍ତ୍ତ ବଲୁଆ ଆସି ବୋଧିସତ୍ତ୍ୱ ବାସ କରୁଥିବା ବଣରେ ପହଞ୍ଚିଲା । ବୋଧିସତ୍ତ୍ୱଙ୍କ ସଙ୍ଗରେ ଶହ ଶହ ମୂଷା ଏକାଠି ରହୁଥିବା ଦେଖି ତା ପାଟିରୁ ଲାଳ ଗଡ଼ିଲା । କିନ୍ତୁ ବୋଧିସତ୍ତ୍ୱଙ୍କ ଦେହବଳ ଦେଖି ସେ ଭୟ ପାଇଗଲେ । ଭାବିଲା, ମୂଷା ଖାଉଥିଲା ବେଳେ ଯଦି ମୂଷା ରାଜାର ହାବୁଡ଼ରେ ପଡ଼େ କଥା ସରିଲା । ଏମାନଙ୍କ ଆଗରୁ ଜୀବନଧରି ପଳାଇବା ସମ୍ଭବ ହେବ ନାହିଁ । ତେଣୁ ନିରାପଦରେ କେମିତି ମୂଷାମାନଙ୍କୁ ଖାଇହେବ ତାର ଉପାୟ ପାଞ୍ଚିଲା ।

ତା’ ମନକୁ ଗୋଟିଏ ଭାବନା ଜୁଟିଲା । ସେ ମୂଷାମାନଙ୍କ ଗାତ ପାଖରେ ଏକ ଗୋଡ଼ଆ ଛିଡ଼ା ହୋଇ ସୂର୍ଯ୍ୟଙ୍କୁ ଚାହିଁଲା ଏବଂ ପବନ ପିଉଥିବା ଅଭିନୟ କଲା ।

ମୂଷାମାନେ ଯଥା ସମୟରେ ଆଧାର ଖୋଜିବାକୁ ଗାତରୁ ବାହାରି ପଡ଼ିଲେ । ଆଗେ ଆଗେ ମୂଷାରାଜା ବୋଧିସତ୍ତ୍ୱ ଚାଲିଥାନ୍ତି । ତାଙ୍କ ପଛରେ ଶହ ଶହ ମୂଷା ଧାଡ଼ି ହୋଇ ଯାଉଥାନ୍ତି ।

ବୋଧିସତ୍ତ୍ୱ ସେହି ଏକ ଗୋଡ଼ଆ, ପବନଖିଆ ବଲୁଆକୁ ଦେଖି ଭ୍ରମରେ ପଡ଼ିଗଲେ । ସେ ଭାବିଲେ ବଲୁଆଟି ସାଧୁଟିଏ ହୋଇଥିବ । ଏହା ଭାବି ସେ ବଲୁଆ ପାଖକୁ ଗଲେ ଓ ପଚାରିଲେ, ତୁମର ନାମ କ’ଣ ?

ମୋ’ ନାଁ ସାଧୁ । ବଲୁଆ ଉତ୍ତର ଦେଲା । ଆଚ୍ଛା ତୁମେ ଗୋଟିଏ ଗୋଡ଼ରେ ଏମିତି ଛିଡ଼ା ହୋଇଛ କାହିଁକି ? ସେ ପ୍ରଶ୍ନ କଲେ । ଦେଖ ଯଦି ମୁଁ ଏକାବେଳକେ ଚାରିଗୋଡ଼ ପକାଇ ଛିଡ଼ା ହୁଏ, ତାହା ହେଲେ ପୃଥିବୀ ହୁଏତ ମୋ ଭାର ସମ୍ଭାଳି ପାରିବ ନାହିଁ । ପୃଥିବୀକୁ ଉଶ୍ୱାସ ରଖିବା ପାଇଁ ମୁଁ ମାତ୍ର ଗୋଟିଏ ଗୋଡ଼ରେ ଛିଡ଼ା ହୋଇଛି । ବଲୁଆ ଉତ୍ତର ଦେଲା ।

ତେବେ ତୁମର ପାଟି ମେଲାଇ ଛିଡ଼ା ହୋଇଛ କାହିଁକି ? ବୋଧିସତ୍ତ୍ୱ ପ୍ରଶ୍ନକଲେ ।

ପବନ ଖାଇବାକୁ ପାଟି ମେଲଛୁ । ବହୁଦିନ ହେଲା ମୁଁ କେବଳ ପବନ ପିଇ ବଞ୍ଚିଛୁ । ଆଉ କିଛି ଛୁଇଁ ନାହିଁ । ବିଲୁଆ କହିଲା ।

ତେବେ ସୂର୍ଯ୍ୟଙ୍କୁ ଚାହିଁ ରହିଛ କାହିଁକି ? ବୋଧିସତ୍ତ୍ୱ ତାଙ୍କର ଶେଷ ପ୍ରଶ୍ନ ପଚାରିଲେ !

ମୁଁ ସୂର୍ଯ୍ୟ-ପୂଜା କରେ । ତେଣୁ ସବୁବେଳେ ସୂର୍ଯ୍ୟଙ୍କୁ ଚାହିଁରହେ । ଧୂର୍ତ୍ତ ବିଲୁଆ ଉତ୍ତର ଦେଲା ।

ବୋଧିସତ୍ତ୍ୱ ବିଲୁଆର ଛଳନା ପୂର୍ଣ୍ଣ ଉତ୍ତର ଶୁଣି ~~ଭୁଲିଗଲେ~~ ପ୍ରତିଗଲେ । ମନେ ମନେ ଭାବିଲେ, ବିଲୁଆଟି ପ୍ରକୃତରେ ସାଧୁ । ସେ ସାଧୁ ଜୀବନଯାପନ କରୁଛି । ଏଭଳି ସାଧୁର ଦର୍ଶନ କଲେ ପୁଣ୍ୟ ମିଳେ ।

ଏହାପରେ ବୋଧିସତ୍ତ୍ୱ ତାଙ୍କର ଦଳବଳ ନେଇ ପ୍ରତିଦିନ ସକାଳେ ଓ ସଂଜବେଳେ ଏହିପରି ଦୁଇଥର ସେହି ବିଲୁଆକୁ ଦର୍ଶନ କରିବାକୁ ଗଲେ । ସେମାନେ ସମସ୍ତେ ବିଲୁଆକୁ ଭକ୍ତି ଜଣାଇ କୃତାର୍ଥ କୃତ୍ୟ ହେଲେ ।

ବିଲୁଆଟି ଏହାକୁ ମୂଷା ଖାଇବାର ସୁବର୍ଣ୍ଣ ସୁଯୋଗ ବୋଲି ବିଚାରିଲା । ମୂଷାପଲ ତାକୁ ଦର୍ଶନ କରିସାରି ଧାଡ଼ି ହୋଇ ଫେରିଗଲା ବେଳେ, ଧାଡ଼ି ଶେଷରେ ଥିବା ମୂଷାକୁ ସେ ଧରି ପାଟିରେ ପକାଇଲା । ତାପରେ ତାକୁ ପାକୁଳେଇ ପାକୁଳେଇ ଗିଳିଦେଲା ଓ ଜିଭ ବୁଲାଇ, ୧୦ ଗୁଟି ନ ଜାଣିଲା ପରି ସେହି ଏକ ଗୋଡ଼ିଆ ହୋଇ ଛିଡ଼ା ହେଲା । ସତେ ଅବା ସେ କିଛି ଜାଣେ ନାହିଁ ।

ଏହିପରି ଭାବରେ ତା' ଭାଗ୍ୟରେ ଦିନକୁ ଦୁଇଥର ମୂଷା ଆହାର ଜୁଟିଗଲା । ସେ ମନେ ମନେ ଭାରି ଖୁସି ।

ପ୍ରଥମେ ପ୍ରଥମେ କିଛି ଜଣାପଡ଼ିଲା ନାହିଁ । କିନ୍ତୁ ପରେ ଯେତେବେଳେ ମୂଷାମାନଙ୍କ ସଂଖ୍ୟା କମିଆସିଲା; ମୂଷାପଲ ଭିତରେ ଭଲେଣି ପଡ଼ିଲା ।

କାହିଁକି ସେମାନଙ୍କ ଦଳ ସଂଖ୍ୟା କମି ଯାଉଛି, ସେମାନେ ପରସ୍ପରର ପଚରା ପଚରି ହେଲେ ।

କ୍ରମେ କଥାଟା ବୋଧିସତ୍ତ୍ୱଙ୍କ କାନକୁ ଗଲା । ବୋଧିସତ୍ତ୍ୱ ମଧ୍ୟ ପ୍ରଥମେ ଏହାର କାରଣ ଜାଣିପାରିଲେ ନାହିଁ । ପରେ କିନ୍ତୁ ସେହି ସାଧୁ-ବିଲୁଆକୁ ସନ୍ଦେହ କଲେ । ତେଣୁ ବିଲୁଆର ସାଧୁତା ପରୀକ୍ଷା କରିବାକୁ ଚାହିଁଲେ । ପରଦିନ ମୂଷାମାନେ ଯେତେବେଳେ ସାଧୁ-ବିଲୁଆର ଦର୍ଶନରେ ବାହାରିଲେ, ଜାଣିଶୁଣି ବୋଧିସତ୍ତ୍ୱ ସମସ୍ତଙ୍କ ଶେଷରେ ରହିଲେ ।

ସବୁଦିନ ପରି ଧୂର୍ତ୍ତ-ବିଲୁଆଟି ଧାଡ଼ି ଶେଷରେ ଥିବା ବୋଧିସତ୍ତ୍ୱଙ୍କୁ ଧରି ପକାଇବାକୁ ବାହାରିଲା ।

କିନ୍ତୁ ବୋଧିସତ୍ତ୍ୱ ପୂର୍ବରୁ ସତର୍କ ଥିଲେ । ସେ ହଠାତ୍ ଧାଡ଼ିରୁ ଘୂଞ୍ଚିଯାଇ କହିଲେ— "କିରେ ସୂର୍ଯ୍ୟ ପୂଜକ । ଏଇ କ'ଣ ତୋର ସାଧୁତା ? ସାଧୁର ଖୋଳ ପିନ୍ଧି ପ୍ରବଞ୍ଚକର ଅଭିନୟ କରିବା କ'ଣ ଉଚିତ ହେଉଛି ?"

ବିଲୁଆଟି ବୋଧିସତ୍ତ୍ୱଙ୍କ ପ୍ରଶ୍ନ ଶୁଣି ଚମକି ପଡ଼ିଲା । ସେ ତାଙ୍କ ହାତରେ ଧରାପଡ଼ି ଯାଇଥିବା ଦେଖି ପ୍ରମାଦ ଗଣିଲା ।

ବୋଧିସତ୍ତ୍ୱ ଏପରି ଧୂର୍ତ୍ତ ପ୍ରବଞ୍ଚକକୁ କ୍ଷମାଦେଲେ ନାହିଁ । ସେ କୁଦାମାରି ଧୂର୍ତ୍ତ ବିଲୁଆର ବେକକୁ ନିଜର ମୁନିଆଁ ଦାନ୍ତରେ କାଟି ପକାଇଲେ । ଅନ୍ୟ ମୂଷାମାନେ ମଧ୍ୟ ସେହି ଧୂର୍ତ୍ତ ବିଲୁଆ ଉପରେ ଆକ୍ରମଣ କରି ତାକୁ ବିନାଶ କରିଦେଲେ ।

●



# ସାଧବ ପୁଅର କାହାଣୀ

ବୋଧିସତ୍ତ୍ୱ ଥରେ ଜଣେ ଧନୀ ସାଧବର ପୁତ୍ର ଭାବରେ ବାରାଣସୀରେ ଜନ୍ମଲାଭ କରିଥିଲେ ।

ସେତେବେଳେ ପ୍ରସିଦ୍ଧ ରାଜା ବ୍ରହ୍ମଦତ୍ତ ବାରଣସୀର ରାଜାଥିଲେ ।

ବାପାଙ୍କର କାଳ ହେବାପରେ ବୋଧିସତ୍ତ୍ୱ ତାଙ୍କର ଅଚଳାଚଳ ସମ୍ପତ୍ତିର ମାଲିକ ହେଲେ । ତାଙ୍କଘରେ ଲକ୍ଷ ଲକ୍ଷ ସୁନା-ମୋହର ପୋତା -ହୋଇ ରହିଥିଲା ।

ବୋଧିସତ୍ତ୍ୱ ତାଙ୍କ ଜୀବନରେ ଦାନ ପୁଣ୍ୟ କରିଥିଲେ; ତେଣୁ ମୃତ୍ୟୁ ପରେ ଇନ୍ଦ୍ର ପଦ ଲାଭ କଲେ । ସେ ଦେବତା ମାନଙ୍କର ରାଜାହେଲେ ।

ବୋଧିସତ୍ତ୍ୱଙ୍କ ମୃତ୍ୟୁପରେ ତାଙ୍କର ଏକମାତ୍ର ପୁତ୍ର ସ୍ଥାବର ଅସ୍ଥାବର ସମ୍ପତ୍ତିର ମାଲିକ ହେଲା ।

କିନ୍ତୁ ବୋଧିସତ୍ତ୍ୱଙ୍କ ପୁତ୍ର ପିତାଙ୍କର ବିପରୀତ ଆଚରଣ କରୁଥିଲା । ସେ ମନ୍ଦ ସ୍ୱଭାବର ଥିଲା । ତାହାର ଅନେକ ଖରାପ ବନ୍ଧୁ ଥିଲେ । ସେହି ଖରାପ ବନ୍ଧୁମାନଙ୍କ ସଙ୍ଗରେ ମିଶି ସେ ମଦ୍ୟପାନ କଲା ଓ ବେଶ୍ୟାମାନଙ୍କ ସଙ୍ଗରେ କୁତ୍ସିତ ଜୀବନଯାପନ କଲା । ଶେଷରେ ସେ ସେହି କୁସଙ୍ଗ ବୁଦ୍ଧିରେ ପଡ଼ି ରାସ୍ତା ଧାରରେ ଏକ ଯାତ୍ରା-ଉତ୍ସବର ଆୟୋଜନ କଲା ।

ଯାତ୍ରା-ଉତ୍ସବରେ ଭାଗନେଇଥିବା ଖେଳାଳୀ, ଜୁଆଡ଼ି, ସଙ୍ଗୀତ ପରିବେଷକ ଓ ନୃତ୍ୟ ଆସରର ନାୟକ ଓ ନାୟିକାମାନଙ୍କୁ ଅଜସ୍ର ଅର୍ଥ ଦାନକଲା । ଯାତ୍ରା ସମୟରେ ସେ ରାସ୍ତାଧାରରେ ବନ୍ଧୁ ମାନଙ୍କ ସଙ୍ଗରେ ଆରାମରେ ବସି ଖାଲି ମଦ ଖାଇଲା । ସେ ମଦ ଖାଇ ମାତାଲ ହେଲା ଓ ଖାଲି ନାଚିବାକୁ, ଗାଇବାକୁ ଉତ୍ସାହ ପ୍ରଦାନ କଲା । ବାଣିଜ୍ୟ ବ୍ୟବସାୟରେ ତାର ମନ ନଥିଲା । ସେ ଖାଲି ସଞ୍ଚିତ ଧନର ଅପବ୍ୟବହାରକୁ ଜୀବନ ବୋଲି ଧରି ନେଇଥିଲା ।

ବସିଖାଇଲେ ନଈବାଲି ବ' ସରିଯାଏ । କ୍ରମେ ସେହି ସାଧବ ପୁତ୍ର ଘରର ସମସ୍ତ ଧନସମ୍ପଦ, ପୋତାସମ୍ପଦ ବ୍ୟୟ କଲା । ତଥାପି ତା'ର ମଉଜ ମଜ୍‌ଲିସ୍ ପାଇଁ ଧନ ଅଣ୍ଟିଲା ନାହିଁ ।

ଯିଏ ଯେତେପ୍ରକାର ବୁଝାଇ ଧର୍ମ-ଉପଦେଶ ଦେଲେ ମଧ୍ୟ ସେ ଶୁଣିଲା ନାହିଁ । ସେ ଖାଲି ଖରାପ ସାଙ୍ଗମାନଙ୍କ କଥାରେ ପଡ଼ି ଖରାପ ଆଚରଣ କରିବାକୁ ଉଚିତ ମନେକଲା ।

ଘର ଖାଲିହେଲା । କ୍ରମେ ଘରର ଆସବାବ ପତ୍ର ବି ବିକାହେଲା । ଅବଶେଷରେ ସର୍ବସ୍ୱାନ୍ତ ହୋଇ ପିତୃ-ଘର ଖଣ୍ଡିକ ବିକି ଦାଣ୍ଡର ଭିକାରି ହେଲା । ଦେହରେ ଖଣ୍ଡେ ଭଲ ଲୁଗା ବି ରହିଲା ନାହିଁ । ମାଗିଯାଚି ଖାଇ ରାସ୍ତା କଡ଼ରେ ଆଶ୍ରୟନେଲା ।

ଇନ୍ଦ୍ର ଧ୍ୟାନବଳରେ ମର୍ତ୍ତ୍ୟରେ ଗୁଣ୍ଡିଆଣିଥିବା ତାଙ୍କର ଏକମାତ୍ର ପୁତ୍ରର ଦୁଃଖକଥା ଜାଣିପାରିଲେ । ପୁତ୍ରସ୍ନେହ ତାଙ୍କୁ ଅଧିରକଲା । ସେ ତାଙ୍କର ଏକମାତ୍ର ପୁତ୍ରର ଭୟାବହ ପରିଣତି କଥା ଜାଣିପାରି ଦୁଃଖ ପ୍ରକାଶ କଲେ । ତାକୁ ଭଲରେ ରଖିବା ପାଇଁ ଇନ୍ଦ୍ରଙ୍କ ଇଚ୍ଛାହେଲା ।

ଦିନେ ସେ ପୁତ୍ର ଆଗରେ ଉପସ୍ଥିତ ହେଲେ ଓ ଇଚ୍ଛା-ପୂରଣ ଥାଳିଆଟିଏ ତା' ହାତକୁ ବଢ଼ାଇ ଦେଇ କହିଲେ, ଏହାକୁ ସାବଧାନରେ ପାଖରେ ରଖିବୁ । ଏ ଥାଳୀ ଥିବା ପର୍ଯ୍ୟନ୍ତ ତୋତେ ଦୁଃଖ ସନ୍ତାପ ହେବ କାଟିବାକୁ ପଡ଼ିବ ନାହିଁ । କିନ୍ତୁ ସାଧୁ ସାବଧାନ, ଏ ଥାଳୀକୁ କୌଣସିମତେ ନଷ୍ଟ କରିବୁ ନାହିଁ । ଯଦି ଏ ଥାଳୀଟି ଭାଙ୍ଗିଯାଏ, ପୁଣି ଥରେ ତୋତେ ଦୁଃଖ ଭୋଗିବାକୁ ପଡ଼ିପାରେ ।

ସାଧବପୁତ୍ର ଇଚ୍ଛାପୂରଣ ଥାଳିପାଇ ଖୁସିହେଲା ।

ଏହି ଥାଳୀ ବଳରେ ସେ ପୁଣିଥରେ ଅନେକ ଧନସମ୍ପଦର ମାଲିକ ହେଲା ।

କିନ୍ତୁ ମଣିଷର ପ୍ରକୃତି ବିଚିତ୍ର । ସାଧବ ମନରେ ପୁଣିଥରେ ମଦ ପ୍ରବୃତ୍ତି ଦେଖାଦେଲା । ଧନରତ୍ନ ପାଇବା ପରେ ସେ ପୁଣିଥରେ ମଦଖାଇବା ଆରମ୍ଭ କରିଦେଲା ।

ଦିନେ ମଦଖାଇ ମାତାଲ ହୋଇ, ସେ ସେହି ଅମୂଲ୍ୟ ଥାଳୀ ସଙ୍ଗରେ ଖେଳିବା ଆରମ୍ଭ କରିଦେଲା । ସେ ସେହି ଥାଳୀକୁ ଉପରକୁ ଫିଙ୍ଗି ତଳେ ପଡ଼ିବା ପୂର୍ବରୁ ହାତରେ ଧରି ପକାଉଥିଲା । ଏହିପରି ଭାବରେ ବାରମ୍ବାର ସେ ସେହି ଇଚ୍ଛାପୂରଣ ଥାଳୀ ସଙ୍ଗେ ଖେଳଖେଳି ପାଶବିକ ଆନନ୍ଦ ଲାଭ କରିବାକୁ ଲାଗିଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା—

ଖେଳୁ ଖେଳୁ ସେହି ଥାଳୀଟି ହାତରୁ ଖସିପଡ଼ି ତଳେ ଛେଚିହୋଇ ଓ ଚୂର୍‌ମାର୍ ହୋଇଗଲା ।

ଏଇଠୁ ଆରମ୍ଭ ହେଲା, ସାଧବ ପୁଅର ଦୁଃଖ ଦୁର୍ଦ୍ଦଶା । କ୍ରମେ ତାର ସମସ୍ତ ସମ୍ପତ୍ତି ଉଭେଇ ଗଲା ଓ ଖାଇବାକୁ ନପାଇ ରାସ୍ତା ଧାରରେ ଘୂରି ବୁଲିଲା ।

ଏହିପରି ଭାବରେ ଛିଣ୍ଡା ଲୁଗା ପିନ୍ଧି ଉପବାସରେ ଘୂରି ବୁଲୁ ବୁଲୁ ଦିନେ ସେ ଜଣକ ଘରର କାନ୍ଥତଳେ ମରି ଶୋଇଥିବାର ଦେଖାଗଲା ।

———



# କଟାହକର କପଟତା

ବହୁ ସହସ୍ର ବର୍ଷ ତଳର କଥା—

ସେତେବେଳେ ବୋଧିସତ୍ତ୍ୱ ବାରାଣସୀର ଏକ ଶ୍ରେଷ୍ଠୀ ଗୃହରେ ଜନ୍ମଗ୍ରହଣ କରିଥିଲେ । ବୃଦ୍ଧ ପିତାଙ୍କର ମୃତ୍ୟୁପରେ ବୋଧିସତ୍ତ୍ୱ ତାଙ୍କ ପିତାଙ୍କର ବିପୁଳ ଧନ ସମ୍ପତ୍ତିର ଅଧିକାରୀ ହେଲେ । ସେ ତାଙ୍କର ସୁନ୍ଦରୀ ସ୍ତ୍ରୀ ଓ ଦାସ ଦାସୀଙ୍କୁ ନେଇ ସୁଖରେ କାଳଯାପନ କଲେ ।

କିଛିକାଳ ପରେ ବୋଧିସତ୍ତ୍ୱଙ୍କ ପତ୍ନୀ ଏକପୁତ୍ର ସନ୍ତାନ ପ୍ରସବ କଲେ । ସେହିଦିନ ତାଙ୍କ ଗୃହରେ ଏକ ଦାସୀପୁତ୍ର ଭୂମିଷ୍ଠହେଲା । ଦୁଇ ଶିଶୁ ବୋଧିସତ୍ତ୍ୱଙ୍କ ଘରେ ଆନନ୍ଦରେ ବଢ଼ିବାକୁ ଲାଗିଲେ । କ୍ରମେ ଶିଶୁ-ମାନଙ୍କର ବିଦ୍ୟାଶିକ୍ଷା କରିବା ବୟସ ଆସିଗଲା । ବୋଧିସତ୍ତ୍ୱଙ୍କର ପୁତ୍ର ବିଦ୍ୟା ଶିକ୍ଷା କରିବାକୁ ପାଠଶାଳାକୁ ଗଲାବେଳେ, ଦାସୀ ପୁତ୍ର ମଧ୍ୟ ଲେଖନ ପଠନ ସାମଗ୍ରୀ ଧରି ପାଠଶାଳାକୁ ଗଲା । ବୋଧିସତ୍ତ୍ୱଙ୍କ ପୁତ୍ର ଯାହା ଲେଖାପଢ଼ା କରୁଥିଲେ; ଦାସୀ ପୁତ୍ର ମଧ୍ୟ ତାହା ଦେଖି ଶୁଣି ନିଜ ଚେଷ୍ଟାରେ ଆୟତ୍ତ କଲା ।

ଏହିପରି ଭାବେ କେତେ ବର୍ଷ ଅତିବାହିତ ହେଲା । ଦାସୀ ପୁତ୍ରର ନାମଥିଲା କଟାହକ । ବୟସ ହେବା ପରେ ସେ ଗ୍ରାମର ଜଣେ ଚତୁର ଓ ବୁଦ୍ଧିମାନ ଯୁବକ ଭାବରେ ପରିଚିତ ହେଲା । ସେ ବଡ଼ ହେବାପରେ ବୋଧିସତ୍ତ୍ୱ ପୁତ୍ରର ଦାସ ରୂପେ କାର୍ଯ୍ୟ ନିଯୁକ୍ତି ଲାଭକଲା ।

କିନ୍ତୁ କଟାହକ ମନରେ ସୁଖ ନାହିଁ । ଭାବିଲା, ଏହିପରି ଭାବରେ ଆବଦ୍ଧ ହୋଇ ରହିଗଲେ ତାକୁ ସାରା ଜୀବନ ଦାସତ୍ୱ କରିବାକୁ ପଡ଼ିବ । ତେଣୁ ସେଠାରୁ କୌଶଳରେ ଖସିଯିବାକୁ ଚାହିଁଲା ।

ଏହାପରେ କଟାହକ ନିଜ ହାତରେ ଏକ ମିଥ୍ୟାପତ୍ର ଲେଖି ସେଥିରେ ବୋଧିସତ୍ତ୍ୱଙ୍କ ଦସ୍ତଖତ କଲା ଓ ତାକୁ ନେଇ ଅନ୍ୟ ଏକ ଗ୍ରାମରେ ବାସ

କରୁଥିବା ବୋଧିସତ୍ତ୍ୱଙ୍କ ଜଣେ ବନ୍ଧୁଙ୍କ ନିକଟକୁ ଗଲେ। ଉକ୍ତ ପତ୍ରରେ ଲେଖାଥିଲା, "ମୋର ପୁତ୍ରକୁ ଆପଣଙ୍କ ନିକଟକୁ ପଠାଇଲି । ଆପଣଙ୍କ କନ୍ୟାର ରୂପ ଗୁଣର ପରିଚୟ ପାଇ ମୁଁ ତାକୁ ମୋର ପୁତ୍ରବଧୂରୂପେ ମନୋନୀତ କରିଛି । ମୋର ପୁତ୍ରକୁ ଜାମାତା ରୂପେ ଉପଯୁକ୍ତ ବିବେଚନା କଲେ, ଆପଣଙ୍କ କନ୍ୟା ସାଙ୍ଗରେ ତାକୁ ବିବାହ ଦେଇ ପାଖରେ ରଖିବେ । ପରେ ମୁଁ ପୁତ୍ର ଓ ପୁତ୍ରବଧୂଙ୍କୁ ମୋ ଗୃହକୁ ନେଇ ଆସିବି ।"

ବୋଧିସତ୍ତ୍ୱଙ୍କ ବନ୍ଧୁ ନଗର ନିକଟରେ ଏକ ଗ୍ରାମରେ ବାସ କରୁଥିଲେ । ସେ ଜଣେ ଧନବାନ ଶ୍ରେଷ୍ଠୀ ଥିଲେ । ତାଙ୍କର ବିବାହ ଯୋଗ୍ୟା, ଏକ ସୁନ୍ଦରୀ ଯୁବତୀ କନ୍ୟା ଥିଲା । ସେଥିପାଇଁ ସେ ମଧ୍ୟ ସୁପାତ୍ର ଅନ୍ୱେଷଣ କରୁଥିଲେ । କଟାହକ ହାତରୁ ବୋଧିସତ୍ତ୍ୱଙ୍କ ପତ୍ର ପାଇ ସେ ଆନନ୍ଦ ଅନୁଭବ କଲେ ଓ ନିଜ କନ୍ୟା ସଙ୍ଗେ କଟାହକର ବିବାହ କରାଇ ଦେଲେ । ସେ କଟାହକର କପଟତାକୁ ବୁଝିପାରିଲେ ନାହିଁ ।

କଟାହକଟି ଏହାପରେ ଅତି ଆନନ୍ଦରେ ରୂପସୀ ପତ୍ନୀ ସାଙ୍ଗରେ ଶ୍ୱଶୁର ଗୃହରେ କାଳଯାପନ କରିବାକୁ ଲାଗିଲା । ଧନଶାଳୀ ଶ୍ରେଷ୍ଠୀଙ୍କ ଗୃହରେ ଧନସମ୍ପଦ, ଦାସ ଦାସୀ, ସୁଖାଦ୍ୟ ଇତ୍ୟାଦିର ଅଭାବ ନଥିଲା । କଟାହକ ନିଜ ମନର କପଟତାକୁ ଲୁଚାଇ ରଖି ଆନନ୍ଦରେ କାଳାତିପାତ କଲା ।

କିଛି ଦିନପରେ କଟାହକର ଜନ୍ମଗତ ସଂସ୍କାର ଓ ହୀନଭାବ ପ୍ରକାଶ ପାଇଲା । ତାକୁ ଶ୍ରେଷ୍ଠୀ ଗୃହର ସୁଖ ସମ୍ପଦ ଅରୁଚିକର ମନେ ହେଲା । ସେ ଶ୍ରେଷ୍ଠୀ କନ୍ୟା ସଙ୍ଗରେ ବିନା କାରଣରେ କଳହ କରିବାକୁ ଲାଗିଲା । ଶ୍ୱଶୁର ଘରର ସୁଖାଦ୍ୟ, ପତ୍ନୀର ବେଶ ଭୂଷଣ ତାକୁ ଅରୁଚିକର ମନେ ହେଲା ।

କଷ୍ଟାହକର ଏପରି ହୀନ ଆଚରଣ ଦେଖି ଶ୍ରେଷ୍ଠୀ କନ୍ୟା ଆଶ୍ଚର୍ଯ୍ୟ ହେଲି । ତଥାପି ସ୍ୱାମୀର ସମସ୍ତ ଦୁର୍ବ୍ୟବହାରକୁ ସହ୍ୟ କରି ସେ ନୀରବ ରହିବାକୁ ଉଚିତ ମନେକଲି ।

କିଛିଦିନ ପରେ ବୋଧିସତ୍ତ୍ୱ ସନ୍ଧ୍ୟା ସମୟରେ ଜଗତ ଶୋଭା ଅବଲୋକନ କରୁଥିଲେ, ସେତେବେଳେ ଜଣେ ଅନୁଚର ବୋଧିସତ୍ତ୍ୱଙ୍କ ନିକଟରେ ଛଦ୍ମବେଶୀ ଜାମାତା କଷ୍ଟାହକର ସମସ୍ତ ବିବରଣୀ ପ୍ରଦାନ କଲି ।

ବୋଧିସତ୍ତ୍ୱ ନିଜର ଶ୍ରେଷ୍ଠୀ ବନ୍ଧୁ କଷ୍ଟାହକର କପଟତାର ଶିକାର ହୋଇଥିବା ଶୁଣି ଦୁଃଖ ପ୍ରକାଶ କଲେ । ତାପରେ ସ୍ଥିର କଲେ, ନିଜେ ଯାଇ ଶ୍ରେଷ୍ଠୀ ବନ୍ଧୁଙ୍କୁ ସାକ୍ଷାତ କରିବେ ଓ ତାଙ୍କୁ ଆଶ୍ୱାସନା ଦେବେ । ଆବଶ୍ୟକ ହେଲେ କଷ୍ଟାହକକୁ ନିଜ ପାଖକୁ ଫେରାଇ ଆଣିବେ ।

ଏହାପରେ ବୋଧିସତ୍ତ୍ୱ ତାଙ୍କର ଅନୁଚର ମାନଙ୍କ ସଙ୍ଗରେ ଶ୍ରେଷ୍ଠୀଙ୍କ ଗ୍ରାମକୁ ଯାତ୍ରା ଆରମ୍ଭ କଲେ ।

ବୋଧିସତ୍ତ୍ୱ ତାଙ୍କ ନିକଟକୁ ଆସୁଛନ୍ତି ବୋଲି ସମ୍ବାଦ ପାଇ ଶ୍ରେଷ୍ଠୀ ପରମ ଆନନ୍ଦ ଅନୁଭବ କଲେ । କିନ୍ତୁ କଷ୍ଟାହକ ଭୀଷଣ ଚିନ୍ତା ସଙ୍କଟରେ ପଡ଼ିଲି । ତାର ସମସ୍ତ ଦୁଷ୍କର୍ମ ପ୍ରକାଶ ପାଇଯିବ ଭାବି ସେ ଆତଙ୍କିତ ହୋଇ ଉଠିଲି । ଏହାପରେ ସେ ଏକ ଚତୁରତା ଉଦ୍ଭାବନ କଲି । ବୋଧିସତ୍ତ୍ୱ ଆସିବା ପୂର୍ବରୁ ତାଙ୍କୁ ପଥ ମଧ୍ୟରେ ସମ୍ବର୍ଦ୍ଧନା କରିବା ପାଇଁ ଶ୍ୱଶୁରଙ୍କ ନିକଟରେ ଅନୁରୋଧ କଲା ।

ଶ୍ରେଷ୍ଠୀ ଜାମାତାର ପିତୃ ଭକ୍ତିରେ ମୁଗ୍ଧ ହୋଇ ସମ୍ବର୍ଦ୍ଧନାର ସକଳ ବ୍ୟବସ୍ଥା କରିଦେଲେ । କଷ୍ଟାହକ ମହା ସମାରୋହରେ ବୋଧିସତ୍ତ୍ୱ-ଙ୍କୁ ପଥ ମଧ୍ୟରେ ସାକ୍ଷାତ କରି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲା । ତାଙ୍କୁ ବହୁ ଉପହାର ସାମଗ୍ରୀ ପ୍ରଦାନ କରି ଭୂମିଷ୍ଠ ପ୍ରଣାମ ଜଣାଇଲା ।

ବୋଧିସତ୍ତ୍ୱ ଶ୍ରେଷ୍ଠୀଙ୍କର ପୁଷ୍ପ ବାଟିକାରେ ସ୍ୱତନ୍ତ୍ର ତମ୍ବୁ ପକାଇ ରହିବାର ବ୍ୟବସ୍ଥା କଲେ । କଣ୍ଠାହକ ବୋଧିସତ୍ତ୍ୱଙ୍କ ସେବାରେ ନିଜକୁ ନିୟୋଜିତ କଲା ! ବୋଧିସତ୍ତ୍ୱ କପଟାଗ୍ରସ୍ତ କଣ୍ଠାହକର ସେବାରେ ସନ୍ତୁଷ୍ଟ ହେଲେ । ଦିନେ ଏକାନ୍ତରେ କଣ୍ଠାହକ ବୋଧିସତ୍ତ୍ୱଙ୍କୁ ଜଣାଇଲା; ପ୍ରଭୋ ! ମୋର ଅପରାଧ ନିମନ୍ତେ ମୋତେ କ୍ଷମା କରନ୍ତୁ । ଏଠାରେ ମୋର ପ୍ରକୃତ ପରିଚୟ ଦେଇ ମୋତେ ଆଉ ଲଜ୍ଜିତ କରନ୍ତୁ ନାହିଁ ।

ବୋଧିସତ୍ତ୍ୱ ତାର ଅପରାଧ ମାର୍ଜନା କରି କହିଲେ, କଣ୍ଠାହକ ! ତୁମର ବିବ୍ରତ ହେବାର କୌଣସି କାରଣ ନାହିଁ । ମୁଁ ଏଠାକୁ ତୁମର ପରିଚୟ ଦେବାକୁ ଆସିନାହିଁ । ତୁମର ମଙ୍ଗଳ ବିଧାନ ମୋର କାମ୍ୟ । ବୋଧିସତ୍ତ୍ୱ କିଛିଦିନ ଶ୍ରେଷ୍ଠୀଙ୍କ ଗ୍ରାମରେ ବାସକରି କଣ୍ଠାହକର ବ୍ୟବହାର ପ୍ରତି ଲକ୍ଷ୍ୟ କଲେ । ଦିନେ ଶ୍ରେଷ୍ଠୀ କନ୍ୟାର ମନର ବିରକ୍ତତା ପ୍ରତି ଲକ୍ଷ୍ୟକରି କହିଲେ, ମା' କଣ୍ଠାହକର କୌଣସି ବ୍ୟବହାର ତୋ ମନରେ ଆଘାତ ଦେଉଛି କି ?

ଶ୍ରେଷ୍ଠୀ କନ୍ୟା ବିନୀତ କଣ୍ଠରେ ଉତ୍ତର ଦେଲା; କଣ୍ଠାହକଙ୍କ ଚରିତ୍ରରେ ଆପତ୍ତିଜନକ ଦୋଷ ତ୍ରୁଟି ମୁଁ ଦେଖି ନାହିଁ । କିନ୍ତୁ ମୋର ବେଶ ଭୂଷଣ ଓ ଆମ ଘରର ଖାଦ୍ୟ ତାଙ୍କ ପସନ୍ଦକୁ ଆସୁନାହିଁ । ସେଥିପାଇଁ ବାରମ୍ବାର ଅଶାନ୍ତି ଘଟୁଛି ।

ଏହା ଶୁଣି ବୋଧିସତ୍ତ୍ୱ ଶ୍ରେଷ୍ଠୀ କନ୍ୟାକୁ ଗୋଟିଏ ଶ୍ଳୋକ ଶିଖେଇ ଦେଇ କହିଲେ, ଏହା ବୋଲିଲେ କଣ୍ଠାହକ ସବୁକଥା ବୁଝିଯିବ । ସେ ଆଉ ଅଶାନ୍ତି କରିବ ନାହିଁ । ଶ୍ରେଷ୍ଠୀ କନ୍ୟା ଉକ୍ତ ଶ୍ଳୋକକୁ ମୁଖସ୍ଥ କରିନେଲା ।

ବୋଧିସତ୍ତ୍ୱ ଶିଖେଇ ଦେଇଥିବା ଶ୍ଳୋକର ମର୍ମ ହେଲା, ପ୍ରବାସରେ କାଳ କାଟିବା, ପର ଘରେ ଭୋଜନ କରିବା, ବୈର କାରଣ ହୋଇ ନ

ପାରେ । ଯାହା ଯେତେବେଳେ ମିଳିବ, ତାକୁ ଶାନ୍ତ ଓ ଆନନ୍ଦରେ ଗ୍ରହଣ କରିବା ଉଚିତ । ଆପଣାର ମାନ ମହତ୍ତ୍ୱକୁ ଜଗି ଚଳିଲେ ବିପଦର ସମ୍ଭାବନା ନଥାଏ । ଏହିସବୁ କଥା ସ୍ମରଣ ରଖି ନ ଚଳିଲେ, ପ୍ରଭୁ ଆସି ମନେ ପକାଇ ଦେବେ ।

ବୋଧିସତ୍ତ୍ୱ ଏହାପରେ ବାରାଣସୀକୁ ଫେରିଗଲେ ।

ଶ୍ରେଷ୍ଠୀ କନ୍ୟା ସ୍ୱାମୀକୁ ଖାଇବାକୁ ବାଢ଼ି ସାରିବା ପରେ ବୋଧିସତ୍ତ୍ୱ ଶିଖେଇ ଦେଇ ଯାଇଥିବା ଶ୍ଲୋକଟି ଆବୃତ୍ତି କଲା । ତାହା ଶୁଣି କଣ୍ଠାହକ ଚମକି ଉଠିଲା । ଭାବିଲା ବୋଧିସତ୍ତ୍ୱ ତାର ସ୍ତ୍ରୀ ଆଗରେ ତାର ନିଜର ପରିଚୟ ଦେଇ ଯାଇଛନ୍ତି ବୋଧହୁଏ । ତେଣୁ ଆପଣାର ମହତ ଜଗି ସେ ଖୁବ୍ ସାବଧାନରେ ଚଳିବାକୁ ଲାଗିଲା ।

ଏହାପରେ କଣ୍ଠାହକ ଓ ଶ୍ରେଷ୍ଠୀ କନ୍ୟାର ଦାମ୍ପତ୍ୟ ଜୀବନରେ ଆଉ କୌଣସି ଅଶାନ୍ତି ଘଟିଲା ନାହିଁ । ସେମାନେ ସୁଖରେ ରହିଲେ ।



# ଭଣ୍ଡ ତପସ୍ୱୀକଥା

ବହୁକାଳ ପୂର୍ବେ ବାରାଣସୀରେ ରାଜା ବ୍ରହ୍ମଦତ୍ତ ରାଜତ୍ୱ କରୁଥିଲେ ।

ସେହି ସମୟରେ ବାରାଣସୀ ରାଜ୍ୟର ଏକ ଗ୍ରାମରେ ଜଣେ ଧୂର୍ତ୍ତ ତପସ୍ୱୀ ବାସ କରୁଥିଲେ । ସେ ଜଟା ଓ କୌପୀନ ଧାରଣ କରିଥିଲେ । ମଧୁର କଥା କହି ଲୋକଙ୍କୁ ନିଜ ପ୍ରତି ଆକୃଷ୍ଟ କରିବାକୁ ଚେଷ୍ଟା କରୁଥିଲେ । ଛଳନାର ବ୍ୟୂହ ରଚନା କରି ଲୋକଙ୍କୁ ଭୁଲାଇବା ତାଙ୍କର ଲକ୍ଷ୍ୟ ଥିଲା । ସରଳ ଗ୍ରାମବାସୀମାନେ ତାଙ୍କ ଛଳନା ଭେଦକରି ନ ପାରି ତାଙ୍କ ପ୍ରତି ଆକୃଷ୍ଟ ହେଲେ ।

ଅଧିକାଂଶ ଗ୍ରାମବାସୀଙ୍କୁ ଅକୃଷ୍ଟ କରିବାପରେ ଶାସ୍ତ୍ର ପ୍ରବଚନର ଦ୍ୱାରା ହୋଇ ସେ ଅନେକ ନିୟମ ନିଷ୍ଠା ଦେଖାଇଲେ । ଲୋକେ ତାଙ୍କ ଆଚରଣ ଓ ନିୟମ ନିଷ୍ଠା ଦେଖି ମନେ କଲେ, ଜଣେ ମହାପୁରୁଷ ଆସି ତାଙ୍କ ଗ୍ରାମରେ ପହଞ୍ଚି ଯାଇଛନ୍ତି । ଏହା ଧାରଣା କରି ସେମାନେ ଉକ୍ତ ତପସ୍ୱୀଙ୍କୁ ଆହୁରି ଅଧିକ ଭକ୍ତି ପ୍ରଦର୍ଶନ କଲେ ।

କ୍ରମେ ତପସ୍ୱୀଙ୍କର ଖ୍ୟାତି ସମଗ୍ର ଗ୍ରାମ ଓ ଅଞ୍ଚଳରେ ପ୍ରସାରିତ ହେଲା । ବହୁ ଲୋକ ତାଙ୍କୁ ଦର୍ଶନ କରିବା ପାଇଁ ଓ ତାଙ୍କ ମୁଖରୁ ଉପଦେଶ ଲାଭ କରିବା ପାଇଁ ସେହି ଗ୍ରାମକୁ ଆସିବାକୁ ଲାଗିଲେ ।

ସେହି ଗ୍ରାମରେ ଜଣେ ଧନୀ ଲୋକ ବାସ କରୁଥିଲେ । ସେ ତପସ୍ୱୀଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ଦର୍ଶନ କରିବାକୁ ଆସିଲେ ଓ ତାଙ୍କର ମୁଖ ନିଃସୃତ ବାଣୀ ଶୁଣି ମୁଗ୍ଧ ହେଲେ । ତା'ପରେ ସ୍ୱତଃ ପ୍ରବୃତ୍ତ ଭାବରେ ତପସ୍ୱୀଙ୍କ ନିମନ୍ତେ ଏକ ଗୃହ ନିର୍ମାଣ କରାଇ, ପ୍ରତ୍ୟହ ନିଜ ଗୃହରୁ ତାଙ୍କ ନିମନ୍ତେ ସୁମିଷ୍ଟ ଖାଦ୍ୟ ପ୍ରେରଣ କଲେ ।

ସୁନ୍ଦର ଆବାସ ଏବଂ ସୁମିଷ୍ଟ ଆହାର ବ୍ୟବସ୍ଥା ହେବା ଦେଖି ତପସ୍ୱୀ ଆନନ୍ଦରେ କାଳଯାପନ କରିବାକୁ ଲାଗିଲେ ।

ଧନୀ ବ୍ୟକ୍ତି ଦିବସର ନିର୍ଦ୍ଦିଷ୍ଟ ସମୟରେ ତପସ୍ୱୀଙ୍କୁ ଦର୍ଶନ କରିବାକୁ ଆସୁଥିଲେ । ଉକ୍ତ ବ୍ୟକ୍ତିଙ୍କ ଆଗମନ ସମୟରେ ତପସ୍ୱୀ ମନ ଧ୍ୟାନ ଦେଇ ପୂଜା, ଜପ, ସ୍ତବରେ ନିମଗ୍ନ ରହୁଥିଲେ । ତପସ୍ୱୀଙ୍କର ଏତାଦୃଶ କାର୍ଯ୍ୟକଳାପ ଦେଖି ଧନୀ ବ୍ୟକ୍ତିଙ୍କ ମନରେ ଧାରଣା ହେଉଥିଲା ଯେ, ତପସ୍ୱୀ ଜଣେ ଉତ୍ତମ ସାଧୁ ଶ୍ରେଣୀୟ । ତାଙ୍କର ଈଶ୍ୱର ଭକ୍ତିର ପଟାନ୍ତର ନାହିଁ । ଈଶ୍ୱର ଚିନ୍ତାରେ ସର୍ବଦା ନିମଗ୍ନ ରହୁଥିବା ହେତୁ ତାଙ୍କ ମନକୁ ସାଂସାରିକ ଆସକ୍ତି ସ୍ପର୍ଶ କରିପାରେ ନାହିଁ ।

ଧର୍ମୀ ଗୃହସ୍ଥଙ୍କ ଗୃହରେ ପ୍ରଚୁର ଧନ ସମ୍ପଦ ସଞ୍ଚିତ ଥିଲା । ତେଣୁ ତାଙ୍କ ମନ ସର୍ବଦା ଚୌର ଭୟରେ ଶଙ୍କିତ ଥିଲା । ସେ ଭାବିଲେ, ଶୀଳବାନ୍ ତପସ୍ୱୀଙ୍କ ବାସ ଗୃହରେ କିଛି ଧନ ପୋତି ରଖିଲେ ଚୌର ଭୟ ରହିବ ନାହିଁ । ତପସ୍ୱୀ ନିରାସକ୍ତ ଜୀବନଯାପନ କରନ୍ତି । ଅନ୍ୟମାନଙ୍କ ଘର ସେ ଜଗି ଧନ ଚୋରି ମନବଳାଇବେ ନାହିଁ । ଏହା ଭାବି ଦିନେ ଏକାନ୍ତରେ ଏକ ସହସ୍ର ସ୍ୱର୍ଣ୍ଣ ମୁଦ୍ରା ନେଇ ସେ ତପସ୍ୱୀଙ୍କ ବାସ ଗୃହରେ ପହଞ୍ଚିଲେ । ତପସ୍ୱୀଙ୍କ ତପସ୍ୟା ସ୍ଥଳରେ ତାହା ଯତ୍ନ ସହକାରେ ପୋତି ପକାଇ କହିଲେ, ପ୍ରଭୋ ! ଦୟାକରି ମୋର ଏହି ପୋତା ଧନ ଉପରେ ଆପଣ ଟିକିଏ ସୁଦୃଷ୍ଟି ରଖିଥିବେ ।

ତପସ୍ୱୀ ଏହା ଶୁଣି ଉତ୍ତର ଦେଲେ, ବତ୍ସ ! ମୁଁ ତପସ୍ୱୀ ଜୀବନଯାପନ କରୁଛି । ଧନ ସମ୍ପଦ ଆମର ଶତ୍ରୁ ସ୍ୱରୂପ । ପୁଣି ମୋର ପରିବ୍ରାଜକ ଜୀବନ । କେତେବେଳେ କେଉଁଠିକି ଯିବି, ତାର କ'ଣ ଠିକଣା ଅଛି ? ସଂସାର ଛାଡ଼ି ସନ୍ୟାସୀ ହେଲି । ପୁଣି ତୁମେ ମୋତେ ସଂସାରିକ ବୋଝ ଦେଉଛ କାହିଁକି ? ତେବେ ତୁମ୍ଭେ ଆମର ପ୍ରଧାନ ଭକ୍ତ ହୋଇଥିବାରୁ ତୁମ୍ଭର ଅନୁରୋଧ ରକ୍ଷା କରିବାକୁ ବାଧ୍ୟ ହେଉଛି । ତୁମ୍ଭ ମନରୁ ଚୌର ଭୟ ଦୂର କରିବା ନିମନ୍ତେ ଏ ଦାୟିତ୍ୱ ଗ୍ରହଣ କଲି । ତୁମେ ନିଶ୍ଚିନ୍ତରେ ରୁହ ।

ଏହିପରି ଭାବରେ କିଛିଦିନ ଅତିବାହିତ ହେଲା । ଭଣ୍ଡ ତପସ୍ୱୀଙ୍କୁ ଧନଲୋଭ ଗ୍ରାସ କଲା । ସେ ଭାବିଲେ, ପ୍ରୋଥିତ ଧନ ହସ୍ତଗତ କରି ପାରିଲେ ଜୀବନର ଅବଶିଷ୍ଟ ଦିନଗୁଡ଼ିକ ସ୍ୱଚ୍ଛନ୍ଦରେ ଅତିବାହିତ ହୋଇ ପାରିବ । ସୁତରାଂ ଏହି ସୁବର୍ଣ୍ଣ ସୁଯୋଗ ତ୍ୟାଗ କରିବା ମୂର୍ଖତା ହେବ । ଏହା ଭାବି ଦିନେ ପ୍ରୋଥିତ ସ୍ୱର୍ଣ୍ଣମୁଦ୍ରା ସବୁ ସ୍ଥାନାନ୍ତର କରି ଧର୍ମୀ ଭକ୍ତ ପାଖରେ ପହଞ୍ଚିଲେ ଓ କହିଲେ, ବତ୍ସ ! ଆଜିକୁ ବହୁଦିନ ହେଲା ତୁମେ

ଅନ୍ତରେ ଉତ୍ତପାଳିତ ହେଲ । ଗୋଟିଏ ସ୍ଥାନରେ ବହୁଦିନ ଧରି ରହିବା ତପସ୍ୱୀର ଧର୍ମ ନୁହେଁ । ନାନା ସ୍ଥାନ ଭ୍ରମଣ କରିବା ମୋର ଧର୍ମ । ତେଣୁ ମୁଁ ଆଜ ଅନ୍ୟତ୍ର ଯିବାକୁ ସ୍ଥିର କରିଛି ।

ବିଶ୍ୱସ୍ତ ଭକ୍ତ ତପସ୍ୱୀଙ୍କର ଏତାଦୃଶ ବାକ୍ୟ ଶୁଣି ଦୁଃଖିତ ହେଲେ । ସେ ଆଉ କିଛିଦିନ ଅବସ୍ଥାନ କରିବାକୁ ତପସ୍ୱୀଙ୍କୁ ବାରମ୍ବାର ଅନୁରୋଧ କଲେ । ମାତ୍ର ତପସ୍ୱୀ ତାଙ୍କ ଅନୁରୋଧ ଗ୍ରହଣ ନ କରିବାରୁ ବାଧ୍ୟ ହୋଇ ବିଦାୟ ଦେଲେ ।

ତପସ୍ୱୀଙ୍କ ଉପରେ ଧର୍ମ ବ୍ୟକ୍ତିଙ୍କର ଅଶେଷ ବିଶ୍ୱାସ ଥିଲା । ସେହି ବିଶ୍ୱାସକୁ ଦୃଢ଼ୀଭୂତ କରିବା ନିମନ୍ତେ ଭଣ୍ଡ ତପସ୍ୱୀ କିଛିଦୂର ଯାତ୍ରାକରି ପୁନର୍ବାର ଗୃହସ୍ଥଙ୍କ ନିକଟକୁ ଫେରି ଆସିଲେ । ତାଙ୍କୁ ଦେଖି ଧର୍ମ ଭକ୍ତ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ, ଏଇ ମାତ୍ର ବିଦାୟ ଗ୍ରହଣ କରି ଚାଲି ଯାଇଥିଲେ । ପୁନର୍ବାର ଫେରି ଆସିଲେ କାହିଁକି ? କ'ଣ କିଛି ଜିନିଷ ଛାଡ଼ି ଯାଇଛନ୍ତି କି ?

ଏହି ପ୍ରଶ୍ନ ଶୁଣି ତପସ୍ୱୀ ହସିଲେ । କହିଲେ, ମୁଁ ନିଃସ୍ୱ ଜୀବନଯାପନ ପାଇଁ ଆଗ୍ରହୀ । ମୋ ନିକଟରେ ପିନ୍ଧାବସ୍ତ୍ର ବ୍ୟତୀତ ଆଉ କ'ଣ ଅଛି ଯେ ଛାଡ଼ିଯିବ ? ତେବେ ତୁମ୍ଭ ନିକଟରୁ ବିଦାୟ ନେଇ ଚାଲିଯିବା ପରେ ଦେଖିଲି, ତୁମ୍ଭର ଗୃହରୁ କୁଟାଟିଏ ମୋର ଅଲକ୍ଷିତରେ ମୋ ଜଟାରେ ରହି ଯାଇଛି । ବିଦାୟ ବେଳାରେ ଏ କଥା ଜାଣି ପାରିଥିଲେ, ମୋତେ ଆଉ ପରିଶ୍ରମ କରିବାକୁ ପଡ଼ି ନଥାନ୍ତା । ତୁମ୍ଭ ନିକଟରୁ ବିଦାୟ ନେଇ କିଛି ଦୂର ଚାଲିଯିବା ପରେ ଦେଖିଲି, ମୋ ଜଟାରେ ତୁମ ଗୃହର କୁଟାଖିଅ ରହିଛି । ଗୃହସ୍ଥର ଅଦତ୍ତ ଦ୍ରବ୍ୟ ଗ୍ରହଣ କରିବା ସନ୍ନ୍ୟାସୀ ପକ୍ଷରେ ନିଷିଦ୍ଧ । ସୁତରାଂ ତୁମ ଗୃହର କୁଟାଖିଅକୁ ତୁମକୁ ଫେରାଇ ଦେବା ପାଇଁ ଆସିଲି ।

ତପସ୍ୱୀଙ୍କର କଥା ଶୁଣି ଧନୀ ବ୍ୟକ୍ତି ହତବାକ୍ ପାଲଟି ଗଲେ । ମନେ ମନେ ଭାବିଲେ, ତପସ୍ୱୀଙ୍କ ଚରିତ୍ରର ପଟାନ୍ତର ନାହିଁ । ସନ୍ନ୍ୟାସ ଧର୍ମ ମଧ୍ୟ ଅତି ମହତ୍ । କାରଣ ସାମାନ୍ୟ ତୃଣ ମଧ୍ୟ ସନ୍ନ୍ୟାସୀ ସ୍ପର୍ଶ କରନ୍ତି ନାହିଁ ।

ତପସ୍ୱୀ ନିଜ ଜଟାରୁ କୁଟାଖିଅଟିକୁ କାଢି ଧନୀ ଶିଷ୍ୟଙ୍କ ଆଗରେ ପକାଇ ଦେଲେ । ଶିଷ୍ୟ ଭକ୍ତି ଗଦ୍ଗଦ୍ ଚିତ୍ତରେ ତାଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇ ବିଦାୟ ଦେଲେ ।

ବୋଧିସତ୍ତ୍ୱ ସେହି ସମୟରେ ବାରାଣସୀ ରାଜ୍ୟରେ ପଣ୍ୟବ୍ୟବସାୟୀ ରୂପରେ ଜନ୍ମ ଗ୍ରହଣ କରିଥିଲେ । ସେ ପଣ୍ୟ ବିକ୍ରି ନିମନ୍ତେ ତପସ୍ୱୀ ବସବାସ କରିଥିବା ଗ୍ରାମରେ ପହଞ୍ଚିଲେ । ସେତେବେଳେ ସମଗ୍ର ଗ୍ରାମ ତପସ୍ୱୀଙ୍କ ଉଦ୍ଦେଶ୍ୟରେ ପ୍ରଶଂସା ମୁଖର ହୋଇ ପଡ଼ିଥାଏ । ସମସ୍ତେ ଉକ୍ତ ତପସ୍ୱୀଙ୍କର ସାଧୁତ୍ୱ ବିଷୟରେ ଆଲୋଚନା କରି ଧନ୍ୟ ଧନ୍ୟ କରୁଥାନ୍ତି ।

ବୋଧିସତ୍ତ୍ୱ ତପସ୍ୱୀଙ୍କର ସମସ୍ତ ମାହାତ୍ମ୍ୟ ଶୁଣିଲେ । ଅବଶେଷରେ କୁଟାଖିଅ କଥା ଶୁଣି ତାଙ୍କ ମନରେ ତପସ୍ୱୀଙ୍କ ପ୍ରତି ସନ୍ଦେହ ଭାବ ଜାତ ହେଲା । ସେ ମନେ ମନେ ଚିନ୍ତା କଲେ, ତପସ୍ୱୀ ଅବଶ୍ୟ ପ୍ରତାରକ ହୋଇଥିବ । କୁଟାଖିଅ ଫେରାଇବା ପଛରେ ନିଶ୍ଚୟ କିଛି ଗୂଢ଼ ରହସ୍ୟ ଥିବ । ଏହାଭାବି ସେ ତପସ୍ୱୀଙ୍କର ସେହି ଧନୀ ଶିଷ୍ୟଙ୍କୁ ପାଖକୁ ଡାକି ଚୁପ୍ ଚୁପ୍ ପ୍ରଶ୍ନ କଲେ, ତୁମେ ଯାହାଙ୍କର ଏତେ ପ୍ରଶଂସା ଗାନ କରୁଛ, ତାଙ୍କୁ କେବେ କିଛି ଧନ ରତ୍ନ ଦେଇଥିଲ କି ?

ଧନୀ ବ୍ୟକ୍ତି କହିଲେ; ମହାଶୟ ! ମୁଁ ତପସ୍ୱୀଙ୍କ ହସ୍ତରେ କେବେ କୌଣସି ଧନ ରତ୍ନ ଅର୍ପଣ କରି ନାହିଁ । ତେବେ ତାଙ୍କ ଜ୍ଞାତସାରରେ ତାଙ୍କର ବାସ ଗୃହରେ ଏକ ସହସ୍ର ସ୍ୱର୍ଣ୍ଣ ମୁଦ୍ରା ପ୍ରୋଥିତ କରି ରଖିଥିଲି ।

ବୋଧିସତ୍ତ୍ୱ ଏକଥା ଶୁଣିବା ପରେ ଧନୀ ଗୃହସ୍ଥଙ୍କୁ ପରାମର୍ଶ ଦେଲେ, ଆପଣ ଶୀଘ୍ର ଯାଇ ସ୍ୱର୍ଣ୍ଣମୁଦ୍ରା ଅଛି କି ନାହିଁ ଦେଖି ଆସନ୍ତୁ । ମୋର ଆଶଙ୍କା ହେଉଛି, ସେହି ଧନ ବୋଧହୁଏ ଆଉ ନାହିଁ ।

ବୋଧିସତ୍ତ୍ୱଙ୍କ ପରାମର୍ଶ ଗ୍ରହଣ କରି ସେ ତପସ୍ୱୀଙ୍କ ବାସ ସ୍ଥଳକୁ ଯାଇ ଦେଖିଲେ, ବୋଧିସତ୍ତ୍ୱଙ୍କ ଆଶଙ୍କା ସତ୍ୟରେ ପରିଣତ ହୋଇଛି । ସେ ମର୍ମାହତ ହୋଇ ବୋଧିସତ୍ତ୍ୱଙ୍କ ନିକଟକୁ ଫେରିଆସିଲେ ଓ ଉକ୍ତ ଧନ ଉଦ୍ଧାର ନିମନ୍ତେ ଉପାୟ ପଚାରିଲେ ।

ବୋଧିସତ୍ତ୍ୱ ଧନୀ ଗୃହସ୍ଥଙ୍କୁ ଆଶ୍ୱାସନାର ବାଣୀ ଶୁଣାଇ କହିଲେ, ଅଧୈର୍ଯ୍ୟ ହୁଅ ନାହିଁ । ଅପହୃତ ଧନ ନିଶ୍ଚୟ ଉଦ୍ଧାର ହେବ । ବର୍ତ୍ତମାନ ଭଣ୍ଡତପସ୍ୱୀର ଅନୁଧାବନ କର । ତା' ପାଖରୁ ଧନ ମିଳିବ ।

ଏହାପରେ ବୋଧିସତ୍ତ୍ୱ ଓ ଗୃହସ୍ଥ ଉଭୟେ ଦ୍ରୁତ ବେଗରେ ଧାବମାନ ହେଲେ । କିଛିଦୂର ଯିବାପରେ ସେମାନେ ସେହି ଭଣ୍ଡ ତପସ୍ୱୀକୁ ଧରି-ପକାଇ ଯଥେଷ୍ଟ ପ୍ରହାର କଲେ । ପ୍ରହାର ଫଳରେ ତପସ୍ୱୀ ପାଖରୁ ସମସ୍ତ ଧନ ଉଦ୍ଧାର ହେଲା ।

ବୋଧିସତ୍ତ୍ୱ ଉକ୍ତ ତପସ୍ୱୀକୁ ତିରସ୍କାର କରି କହିଲେ, ଲୋକଙ୍କୁ ପ୍ରତାରିତ କରିବା ଉଚିତ ନୁହେଁ । ଘାସର କୁଟା-ଖିଅ ଫେରାଇ ତୁମେ ତୁମର ଶିଷ୍ୟ ମନରେ ପ୍ରଗାଢ଼ ବିଶ୍ୱାସ ଜନ୍ମାଇ ଥିଲ । କିନ୍ତୁ ସ୍ୱର୍ଣ୍ଣ-ମୁଦ୍ରା ଅପହରଣ କରି ଶିଷ୍ୟ ନିକଟରେ ବିଶ୍ୱାସ ଘାତକତା କଲ । ସନ୍ନ୍ୟାସୀର ଉଚିତ ଆଚରଣ କରିନାହିଁ । ଧର୍ମ ଦେବୁ କଥା ବୁଝେ । ଧର୍ମହିଁ ତୁମକୁ ଧରା ପକାଇଦେଲା ।

ଏହାପରେ ବୋଧିସତ୍ତ୍ୱ ଉକ୍ତ ଭଣ୍ଡ-ତପସ୍ୱୀକୁ ଉପଦେଶ ଦେଇ କହିଲେ, ଧର୍ମ ନାମରେ ପ୍ରତାରଣା କରିବା ଅଧର୍ମ ଅଟେ । ଜୀବନରେ କେବେ କାହାକୁ ପ୍ରତାରଣା କରିବା ଅଧର୍ମ ଅଟେ । ଜୀବନରେ କେବେ

କାହାକୁ ପ୍ରତାରଣା କରିବ ନାହିଁ । କାରଣ ପ୍ରତାରକ ଶେଷରେ ନିଜର ସର୍ବନାଶ କରିଥାଏ ।

ଉକ୍ତ ତପସ୍ୱୀ ବୋଧିସତ୍ତ୍ୱ ଓ ଗୃହସ୍ଥଙ୍କ ନିକଟରେ ଦୋଷ ସ୍ୱୀକାର କରି କ୍ଷମା ପ୍ରାର୍ଥନା କଲା ଓ ଗୃହସ୍ଥଙ୍କ ନିକଟରେ ଦୋଷ ସ୍ୱୀକାର କରି କ୍ଷମା ପ୍ରାର୍ଥନା କଲା ଓ ଅନୁତାପ କରି ସେଠାରୁ ବିଦାୟ ନେଲା ।

ଗୃହସ୍ଥ ମଧ୍ୟ ବୋଧିସତ୍ତ୍ୱଙ୍କ ନିକଟରେ କୃତଜ୍ଞତା ପ୍ରକାଶ କଲେ ।

ବୋଧିସତ୍ତ୍ୱ ଯଥାର୍ଥ ସମୟରେ ସ୍ୱକର୍ତ୍ତବ୍ୟ ସମ୍ପାଦନ କରି ଫେରିଗଲେ । ଏହିପରି ଭାବରେ ସେ ନିଜର ଜୀବନକାଳ ମଧ୍ୟରେ ବହୁ ଲୋକହିତକର କାର୍ଯ୍ୟ କରି ବୃଦ୍ଧ ବୟସରେ ଦେହ ତ୍ୟାଗ କଲେ ।



# ଅତି ଲୋଭରୁ ମୃତ୍ୟୁ

ଅନେକ ବର୍ଷ ପୂର୍ବେ ବୁଦ୍ଧଦେବ ଥରେ ବୁଲାବିକାଳୀ ରୂପରେ ଜନ୍ମ ଗ୍ରହଣ କରିଥିଲେ । ସେତେବେଳେ ତାଙ୍କ ନାଁ ଥିଲା ସେରିବାନ୍ । ସେ ଯେଉଁଠି ଜନ୍ମ ହୋଇଥିଲେ, ସେଠାରେ ସେରିବା ନାମରେ ଆଉ ଜଣେ ବୁଲା ବିକାଳୀ ଥିଲା ।

ସେରିବା ଲୋଭୀ ପ୍ରକୃତିର ମଣିଷ ଥିଲା । ଲୋକଙ୍କୁ ଠକି ଭଣ୍ଡି ସେ ବହୁତ ଲାଭ ଉଠାଉ ଥିଲା । କିନ୍ତୁ ସେରିବାନ୍ ଉତ୍ତମ ପ୍ରକୃତିର ମଣିଷ ଥିଲେ । ସେ କାହାକୁ ହେଲେ ଠକୁ ନଥିଲେ । ସତ୍ ଉପାୟରେ ବ୍ୟବସାୟ କରୁଥିଲେ । ତେଣୁ ଲୋକମାନେ ସେରିବା ପାଖରୁ ଜିନିଷ ପତ୍ର ନ କିଣି ସେରିବାନ୍‌ଙ୍କ ପାଖରୁ କିଣାବିକା କଲେ । ଏହା ଦେଖି ସେରିବା ମହା ଅସୁବିଧାରେ ପଡ଼ିଲା ।

ଏବେ ସେରବା ହେରବାନ୍‌ଙ୍କୁ ଡାକି କହିଲା, ଶୁଣ, ଆମେ ଦୁହେଁ ମିଳିମିଶି ବ୍ୟବସାୟ କରିବା । ଦୁହେଁ ଏକାଠି ମିଶି ଏକ ସମୟରେ ଗୋଟିଏ ଗାଁକୁ ଯିବା ନାହିଁ । ମୁଁ ଗୋଟିଏ ଗାଁକୁ ଗଲେ, ତୁମେ ଅନ୍ୟ ଗାଁକୁ ଯିବ । ତା'ହେଲେ ଉଭୟଙ୍କ ଲାଭ ହେବ । ହେରବାନ୍ ଏଥିରେ ରାଜିହେଲେ । କିନ୍ତୁ ଦେଖାଗଲା, ଏଥିରେ ମଧ୍ୟ ହେରବାର ଲାଭ ହେଲା ନାହିଁ ।

ହେରବା କ୍ଷତିଗ୍ରସ୍ତ ହେଉଥିବା ଦେଖି ହେରବାନ୍‌କୁ କହିଲା, ଭାଇ ! ଗୋଟିଏ ଗାଁକୁ ସାଙ୍ଗ ହୋଇ ଯାଇ ବ୍ୟବସାୟ କରିବା । କିନ୍ତୁ ଦୁହେଁ ଗୋଟିଏ ଜିନିଷ ବିକ୍ରି କରିବା ନାହିଁ । ତୁମେ ଯେଉଁ ଜିନିଷ ବିକିବ ମୁଁ ତାହା ବିକିବି ନାହିଁ । ପୁଣି ମୁଁ ଯାହା ବିକିବି, ତୁମେ ସେ ଜିନିଷ ବିକିବ ନାହିଁ । ହେରବାନ ଏଥିରେ ମଧ୍ୟ ରାଜି ହେଲେ ।

ଏବେ ହେରବା ଓ ହେରବାନ ଭିନ୍ନ ଭିନ୍ନ ଜିନିଷ ନେଇ ଗୋଟିଏ ଗାଁରେ ପହଁଞ୍ଚିଲେ । ଜଣେ ଗାଁର ଏମୁଣ୍ଡରୁ ଗାଁ ଭିତରକୁ ପଶିଲା ତ, ଅନ୍ୟ ଜଣକ ସେ ମୁଣ୍ଡରୁ ଆରମ୍ଭ କଲା । ଦୁହେଁ ନିଜ ନିଜର ଜିନିଷ ବିକିବାକୁ ଲାଗିଲେ ।

ସେହି ଗାଁରେ ଜଣେ ଗରିବ ସ୍ତ୍ରୀ ଲୋକ ରହୁଥିଲା । ସେରବା ସେଦିନ କୁଣ୍ଢେଇ ବିକ୍ରି କରୁଥାଏ । କୁଣ୍ଢେଇ ଡାକ ଶୁଣି ସେହି ଗରିବ ସ୍ତ୍ରୀ ଲୋକର ଝିଅ ଆସି ହେରବାକୁ ନିଜ ଘର ପିଣ୍ଡାକୁ ଡାକି ନେଲା । ଗରିବ ମା' ପାଖରେ ପଇସା ନଥିଲା । ତେଣୁ ସେ ଏକ ପୁରୁଣା ବାସନ କାଢ଼ି ତାହା ବଦଳରେ କୁଣ୍ଢେଇ ଦେବାକୁ ହେରବାକୁ ଅନୁରୋଧ କଲା ।

ହେରବା ସେହି ପୁରୁଣା ବାସନକୁ ପରୀକ୍ଷା କରି ବୁଝିଲା, ତାହା ଏକ ଅତି ମୂଲ୍ୟବାନ ପଦାର୍ଥ । କିନ୍ତୁ ସେ କଥା ସେ ସେହି ଗରିବ ସ୍ତ୍ରୀ

ଲୋକକୁ ଜଣାଇ ଦେବାକୁ ଚାହୁଁ ନଥିଲା । ମନେ ମନେ ଠିକ୍ କଲା, ବୁଢ଼ୀକୁ ଠକି ଜିନିଷକୁ ହାତ ପଇଠ କରିବ । ତେଣୁ ସେ କହିଲା, ପୁରୁଣା ବାସନ ବଦଳରେ କୁଣ୍ଢେଇ ମିଳିପାରିବ ନାହିଁ । ବରଂ ପଇସା ଦେଇ ସେ ସେହି ବାସନ କିଣିନେବାକୁ ରାଜି ଅଛି ।

ଫେରିବା ମୁହଁରୁ ଏପରି କଥା ଶୁଣି ସ୍ତ୍ରୀ ଲୋକଟି କହିଲା, ଯଦି କୁଣ୍ଢେଇ କିଣା ହୋଇ ପାରିବ ନାହିଁ, ତେବେ ଜିନିଷ ବିକି ଲାଭ ନାହିଁ । ଏହା କହି ସେ ଫେରିବାକୁ ଫେରାଇ ଦେଲା ଓ ଜିନିଷଟାକୁ ଫେରାଇ ନେଇ ପେଡ଼ି ଭିତରେ ରଖିଦେଲା ।

ଏହାର କିଛି ସମୟ ପରେ ସେରିବାନ୍ ସେହି ସ୍ତ୍ରୀ ଲୋକଟିର ଦୁଆର ମୁହଁରେ ପହଞ୍ଚିଲେ । ସେରିବାନ ଚୁଡ଼ି ବିକି କରୁଥିଲେ । ଝିଅଟି ବର୍ତ୍ତମାନ ଚୁଡ଼ି ପିନ୍ଧିବ ବୋଲି ଅଳି କଲା । ସ୍ତ୍ରୀ ଲୋକ ଜଣକ ପେଡ଼ିରୁ ସେହି ପୁରୁଣା ବାସନ ଖଣ୍ଡିକ କାଢି ସେରିବାନ ହାତରେ ଦେଲା ଓ କହିଲା; ଏହି ବାସନ ବଦଳରେ ଚୁଡ଼ି ଦିଅ ।

ସେହି ପୁରୁଣା ବାସନକୁ ପରୀକ୍ଷା କରି ସେରିବାନ୍ ଜାଣିଲେ, ତାହା ଏକ ବହୁ ମୂଲ୍ୟବାନ ବାସନ । ସେ ସେହି ସ୍ତ୍ରୀ ଲୋକକୁ କହିଲେ, ମା' ! ଏ ତ ଅତି ମୂଲ୍ୟବାନ ଜିନିଷ । ଏଥିରେ ବହୁ ମୂଲ୍ୟବାନ ମୋତି, ମାଣିକ୍ୟ ଲାଗିଛି । ମୋ' ପାଖରେ ଏତେ ଟଙ୍କା କାହିଁ ଯେ, ଏହାକୁ କିଣି ପାରିବି ? ମୋ ପାଖରେ ମାତ୍ର ପାଞ୍ଚଶହ ମୁଦ୍ରା ଅଛି ।

ସ୍ତ୍ରୀ ଲୋକଟି ଭାବିଥିଲା, ତାର ପୁରୁଣା ବାସନ ଖଣ୍ଡିକ ଦାମିକା ନୁହେଁ । ଆଗେ ସେ ଜଣେ ବଡ଼ ଲୋକର ବୋହୂ ଥିଲା । ତିନି ପୁରୁଷର ଜିନିଷ ପେଡ଼ି ଭିତରେ ପଡ଼ି ରହିଥିଲା । ବର୍ତ୍ତମାନ ସେରିବାନ୍ଙ୍କ ମୁହଁରୁ ସେହି ବାସନର ମୂଲ୍ୟ ସମ୍ପର୍କରେ ଜାଣିବାକୁ ପାଇ ଆଶ୍ଚର୍ଯ୍ୟ ହୋଇଗଲା । କହିଲା, ଏବେ ଜଣେ ବୁଲା ବିକାଳି ଆସି ଜିନିଷ ଦେଖିଗଲା । ସେ ଏହି

-ବାସନକୁ ମୂଲ୍ୟବାନ ବୋଲି କହିଲା ନାହିଁ । ତୁମେ କହୁଛ ଏହାର ଦାମ ପାଞ୍ଚଶ ମୁଦ୍ରାରୁ ଅଧିକ ହେବ । ତୁମ ପାଖରେ ଯେତିକ ଧନ ଅଛି ସେତକ ଦେଇ ଏ ବାସନ କିଣିନିଅ । ମୁଁ ପାଞ୍ଚଶ ମୁଦ୍ରାରୁ ଅଧିକ ଦାବୀ କରୁନାହିଁ ।

ଏହା ଶୁଣି ସେରବାନ ବୁଢ଼ୀ ହାତକୁ ପାଞ୍ଚଶ ମୁଦ୍ରା ବଢ଼ାଇ ଦେଇ ଜିନିଷଟିକୁ କିଣି ନେଲେ । ତା'ପରେ ମନ ଖୁସିରେ ଝିଅ ହାତରେ ଚାରି କେଇପଟ ପିନ୍ଧାଇ ଦେଲେ ।

ଏହାର ଆଉ କିଛି ସମୟ ପରେ ସେରବା ପୁଣି ଥରେ ସେହି ସ୍ତ୍ରୀ ଲୋକର ଦୁଆର ମୁହଁରେ ହାବୁଡ଼ିଲା । ସ୍ତ୍ରୀ ଲୋକଟିକୁ କହିଲା, ତୁମର ସେହି ମଇଳା ବାସନ ଦିଅ । ମୁଁ କିଛି ଅଧିକା ମୂଲ୍ୟ ଦେଇ ତାକୁ କିଣି ନେବି ।

ବୁଢ଼ୀ କହିଲା, ଆଉ କଣ ସେ ଜିନିଷ ମୋ ପାଖରେ ଅଛି ? ଆଜି ଜଣେ ବୁଲା ବଣିକ ଆସି, ପାଞ୍ଚଶହ ମୁଦ୍ରା ଦେଇ ତାକୁ ମୋ ପାଖରୁ କିଣି ନେଇଗଲେ । ତୁମେ ତ ଖୁବ ଅଳ୍ପ ଦାମ କହୁଥିଲ ।

ଆଉ ଜଣେ ବୁଲା ବଣିକ ଶୁଣି ସେରବା ଭାବିଲା, ସେ ନିଶ୍ଚୟ ସେରବାନ୍ ବ୍ୟତୀତ ଆଉ କେହି ନୁହେଁ । ସେ ସେରବାନ୍ ପାଖକୁ ଧାଇଁବାକୁ ଲାଗିଲା । ଭାବିଲା, ସେରବାନ୍‌କୁ ଭେଟିଲେ ତାକୁ ପାଞ୍ଚଶହ ମୁଦ୍ରା ଦେଇ ତା ପାଖରୁ ସେହି ବହୁ ମୂଲ୍ୟବାନ ଜିନିଷକୁ ଫେରାଇ ଆଣିବ । କାରଣ ସେ ପ୍ରଥମେ ସେହି ସ୍ତ୍ରୀ ଲୋକକୁ ଭେଟିଥିଲା ଓ ଜିନିଷର ଦରଦାମ କରିଥିଲା । ତେଣୁ ସେହି ଜିନିଷ ଉପରେ ତାର ଅଧିକ ଦାବି ।

ଗାଁ ସାରା ଖୋଜି ଖୋଜି ସେରବା ତାର ସାଥୀ ସେରବାନ୍‌କୁ ପାଇଲା ନାହିଁ । ଭାବିଲା, ସେରବାନ୍ ହୁଏତ ସେହି ଗାଁ ମୁଣ୍ଡରେ ଥିବ ।

ନଈପାର ହୋଇ ଆରପାରକୁ ଚାଲି ଯାଉଛନ୍ତି । ନଈରେ ଅନେକ ପାଣି । ତେଣୁ ସେ ନାଆ ଉପରେ ବସି ନଈ ପାର ହେବାକୁ ଲାଗିଲା । କିନ୍ତୁ ସେ ମଝିରେ ପହଁଚିଛନ୍ତି ଦେଖିଲା, ହେରବାନ୍ ଆରପଟେ ପହଁଚିଯାଇଛନ୍ତି ।

ହେରବା ବର୍ତ୍ତମାନ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲା । ସେ ସେରବାନ୍‌କୁ ପାଟିକରି ଡାକି ଅଟକାଇବାକୁ ଚାହିଁଲା । ତାହା ହେଲା ନାହିଁ । ଶେଷରେ ନାଉରୀକୁ ଡାକି ସେରବାନ୍‌କୁ ଅଟକାଇବାକୁ କହିଲା । କିନ୍ତୁ ନାଉରୀକୁ ତା' ଡାକ ଶୁଭିଲା ନାହିଁ । ସେରବା ଭାବିଲା, ଆଉ ହେରବାନ୍‌କୁ ଭେଟି ହେବ ନାହିଁ । ତେଣୁ ସେ ନାଆରେ ବସି ପାରହେବା ଅପେକ୍ଷା ଶୀଘ୍ର ପହଁଚି ଯାଇ ହେରବାନ୍‌କୁ ଭେଟିବାକୁ ଚାହିଁଲା । ଥଳ ଅଥଳ ନ ବୁଝି, ନ ଉଣିକୁ ନ ପଚାରି ହଠାତ୍ ସେ ସୁଅ ଉପରକୁ ଡେଇଁ ପଡ଼ିଲା ।

ନାଉରୀ ହେରବାର ଏହି ଅଦ୍ଭୁତ କାର୍ଯ୍ୟ ଦେଖି ଆଶ୍ଚର୍ଯ୍ୟ ପ୍ରକାଶ କଲା ।

ହେରବା ପହଁରି ଜାଣେ ନାହିଁ । ତେଣୁ ଚାହୁଁ ଚାହୁଁ ନଈ ସୁଅରେ ଭାସି ଜଳତଳାନ୍ତ ହୋଇଗଲା ।

ହେରବା ଅଳ୍ପ ଲୋଭରୁ ଜୀବନ ହରାଇଲା ।

—×—

# ନ୍ୟାୟ୍ୟ ବିଚାର

ବହୁବର୍ଷ ତଳର କଥା—

ସେତେବେଳେ ବାରାଣସୀରେ ରାଜା ବ୍ରହ୍ମଦତ୍ତ ରାଜତ୍ୱ କରୁଥିଲେ । ବୋଧିସତ୍ତ୍ୱ ଉକ୍ତ ରାଜାଙ୍କ ଅଧୀନରେ କାମ କରୁଥିଲେ । ରାଜ୍ୟର ପ୍ରୟୋଜନୀୟ ଜିନିଷ ସବୁ କ୍ରୟ ବିକ୍ରୟ କରିବା ତାଙ୍କର କାର୍ଯ୍ୟଥିଲା । ସେ ପଣ୍ୟଦ୍ରବ୍ୟ ସମେତ ଗାଈ, ଘୋଡ଼ା, ହାତୀ ପ୍ରଭୃତିର କ୍ରୟ ମୂଲ୍ୟ ମଧ୍ୟ ଧାର୍ଯ୍ୟ କରି ଦେଉଥିଲେ । ତାଙ୍କର ନିର୍ଦ୍ଧାରିତ ମୂଲ୍ୟରେ ରାଜ୍ୟରେ କ୍ରୟ ବିକ୍ରୟ ଚାଲିଥିଲା ।

ବୋଧିସତ୍ତ୍ୱ ଜଣେ ବୁଦ୍ଧିମାନ ରାଜ କର୍ମଚାରୀ ଥିଲେ । ସେ ସବୁକଥା ବିଚାର କରି ଜିନିଷପତ୍ର, ପଶୁପକ୍ଷୀ ଇତ୍ୟାଦିର ଯେଉଁ ମୂଲ୍ୟ ନିର୍ଦ୍ଧାରିତ କରୁଥିଲେ, ସେହି ମୂଲ୍ୟ କ୍ରେତା ଓ ବିକ୍ରେତାଙ୍କ ଉଭୟଙ୍କ ପାଇଁ ଗ୍ରହଣୀୟ ଥିଲା । ତାଙ୍କ ମୂଲ୍ୟ ନିର୍ଦ୍ଧାରଣରେ କେହି ଅସନ୍ତୁଷ୍ଟ ନ ଥିଲେ ।

ରାଜା ବ୍ରହ୍ମଦତ୍ତ ଦିନେ ବୋଧିସତ୍ତ୍ୱଙ୍କ କାର୍ଯ୍ୟରେ ସନ୍ଦେହ ପ୍ରକାଶ କଲେ । ଭାବିଲେ; ସେ ଯଦି ଜିନିଷର ଉପଯୁକ୍ତ ମୂଲ୍ୟ ନିର୍ଦ୍ଧାରଣ ନ କରି ତାକୁ ଏପଟ ସେପଟ କରିଦିଏ, ଜିନିଷର ମୂଲ୍ୟ କମାଇ ଦିଏ ତା'ହାହେଲେ ଆନୁପାତିକ ହାରରେ ରାଜକୋଷ ଉପରେ ତାର ପ୍ରତିକ୍ରିୟା ପଡ଼ିବ । ଫଳରେ ରାଜକୋଷ ଶୂନ୍ୟ ହୋଇ ଯିବାର ଆଶଙ୍କା ରହିଛି ।

ଏହିପରି ଭାବରେ ସେ ବୋଧିସତ୍ତ୍ୱଙ୍କ ନିଷ୍ଠା ଉପରେ ଚିନ୍ତିତ ଅଛନ୍ତି, ତାଙ୍କ ଗୃହର ପଛ ପଟକୁ ଥିବା ଝରକା ଖୋଲି ଦେଲେ । ସେହି ଝରକା ଦେଇ ବଗିଚାର ଦୃଶ୍ୟ ଦେଖା ଯାଉଥାଏ । ସେ ଦେଖିଲେ ତାଙ୍କ ବଗିଚାର ମାଳି କାର୍ଯ୍ୟ ବ୍ୟସ୍ତ ଅଛି । ସେ ବଗିଚାର ବୃକ୍ଷମାନଙ୍କ ପାଦ ଦେଶରେ ପାଣି ଢାଳୁଛି । ଏଥିପାଇଁ ତାକୁ ଖୁବ୍ କଷ୍ଟ କରିବାକୁ ପଡ଼ୁଛି । ତଥାପି ମନଧ୍ୟାନ ଦେଇ ସେ ଆପଣା କାମ କରି ଯାଉଛି । ରାଜା ମନେ ମନେ

ତାକୁ ଓ ତା'ର କାର୍ଯ୍ୟକୁ ପ୍ରଶଂସା କଲେ । ପରଦିନ ପୁରସ୍କାର ସ୍ୱରୂପ ଉକ୍ତ ମାଳୀକୁ ରାଜ୍ୟର ଦରଦାମ୍ ନିୟନ୍ତ୍ରକଙ୍କ ପଦରେ ଅଧିଷ୍ଠିତ କରିଦେଲେ ।

ରାଜା ବ୍ରହ୍ମଦତ୍ତଙ୍କର ବଗିଚାର ମାଳୀ ରାଜ୍ୟର ଦରଦାମ ନିୟନ୍ତ୍ରକ ପରି ଗୁରୁତ୍ୱପୂର୍ଣ୍ଣ ପଦରେ ନିଯୁକ୍ତି ହେଲା । ପ୍ରକୃତରେ ତାର ଏହି କାର୍ଯ୍ୟରେ କୌଣସି ଅଭିଜ୍ଞତା ନଥିଲା । ସେ କେବଳ ବଗିଚାର ଫୁଲ,ଫଳ ଓ ଶସ୍ୟ କ୍ଷେତର ଶସ୍ୟ କଥା ଜାଣିଥିଲା । ତେଣୁ ହାତୀ, ଘୋଡ଼ା, ଟାଙ୍କ ପ୍ରଭୃତିଙ୍କର ଉଚିତ ଦାମ୍ ନ ଜାଣି, ଚାଉଳ ମୁଠା ଦର ସଙ୍ଗେ ତାକୁ ସାମିଲ କଲା । ଏହିପରି ଅନ୍ଦାଜ କରି କିଛିଦିନ କଟାଇ ଦେଲା । ଫଳରେ ରାଜ୍ୟର ବ୍ୟବସାୟୀ ସମ୍ପ୍ରଦାୟ ଅନେକ କ୍ଷତି ହେଲେ ।

ଅଥଚ ରାଜା ବ୍ରହ୍ମଦତ୍ତ ଭାବୁଥିଲେ, ମାଳୀ ଖୁବ୍ ପରିଶ୍ରମୀ । ସେ ମନଧ୍ୟାନ ଦେଇ ଆପଣା କାମ କରେ । ରାଜ ସମୃଦ୍ଧି ପାଇଁ ତାର ଅନେକ ଲୋଭ । ସେ ଅବଶ୍ୟ ରାଜ୍ୟର ରାଜକୋଷ ପୂର୍ଣ୍ଣ କରି ଦେବ ।

ରାଜ୍ୟ ପାଇଁ ଯେଉଁ ଜିନିଷ ପତ୍ର କିଣା ଯାଉଥିଲା, ତାହା ଚାଉଳ ମୁଠା ଦରରେ କିଣା ଯାଉଥିଲା । ଏଥିରେ ରାଜ୍ୟର ଓ ରାଜ କୋଷରହିଁ କ୍ଷତି ହେଉଥିଲା । ରାଜ୍ୟର ଲୋକମାନେ ସେଥିପାଇଁ ପ୍ରକାଶ୍ୟରେ ଦରଦାମ୍ ନିୟନ୍ତ୍ରକଙ୍କୁ କିଛି କହି ପାରୁନଥିଲେ । ଅଥଚ ସେମାନେ ଉପଲବ୍ଧି କରୁଥିଲେ ଯେ, ନିୟନ୍ତ୍ରକ ଉଚିତ କାର୍ଯ୍ୟ କରୁ ନାହାଁନ୍ତି ।

ଥରେ ଉତ୍ତର ଦେଶରୁ ଜଣେ ଅଶ୍ୱ-ବ୍ୟବସାୟୀ ପାଞ୍ଚଶହ ଅଶ୍ୱ ସଙ୍ଗରେ ନେଇ ବାରାଣସୀ ରାଜ୍ୟକୁ ଆସିଲେ । ସେ ରାଜାଙ୍କୁ ସାକ୍ଷାତ କରି ଅଶ୍ୱ ବିକ୍ରୟ ଇଚ୍ଛା ପ୍ରକାଶ କଲେ । ରାଜା ଦର ନିୟନ୍ତ୍ରକଙ୍କୁ ଡାକି ଅଶ୍ୱ-ମାନଙ୍କର ଉଚିତ ମୂଲ୍ୟ ନିର୍ଦ୍ଧାରଣ କରିବାକୁ ଆଦେଶ ଦେଲେ । ଦର ନିୟନ୍ତ୍ରକ ରାଜାଙ୍କ ଆଦେଶ ଅନୁସାରେ ବ୍ୟବସାୟୀ ମାନଙ୍କର ଅଶ୍ୱମାନଙ୍କୁ

ପରୀକ୍ଷା କଲା । ଶେଷରେ ମନ୍ତବ୍ୟ ଦେଲା, ପାଞ୍ଚଶହ ଅଶ୍ୱର ଦାମ୍ ଶଗଡ଼େ ଧାନରୁ ବେଶି ହେବନାହିଁ । ସେ ଅଶ୍ୱପାଳମାନଙ୍କୁ କହିଲା, ଶଗଡ଼େ ଧାନ ନେଇ ପାଞ୍ଚଶହ ଘୋଡ଼ାଙ୍କୁ ନେଇ ଘୋଡ଼ାଶାଳରେ ବାନ୍ଧିରଖ ।

ଏହା ଦେଖି ଅଶ୍ୱ ବ୍ୟବସାୟୀଙ୍କ ମୁଣ୍ଡରେ ଚଡ଼କ ପଡ଼ିଲା । ସେ ବୋଧିସତ୍ତ୍ୱଙ୍କୁ ଯାଇ ଦେଖା କଲେ ଓ ତାଙ୍କର ଦୁଃଖ କଥା ଜଣାଇଲେ । ବୋଧିସତ୍ତ୍ୱ ସବୁ କଥା ଶୁଣିବା ପରେ ଅଶ୍ୱ ବ୍ୟବସାୟୀଙ୍କୁ କହିଲେ, ଆପଣ ବର୍ତ୍ତମାନ ଯାଇ ସେହି ଦର ନିରୂପକଙ୍କୁ ଦେଖା କରନ୍ତୁ । ତା' ପାଇଁ କିଛି ଉପହାର ବି ନେଇ ଯାଆନ୍ତୁ । ଉପହାର ପାଇଲେ ସେ ଖୁସି ହେବ । ତା'ପରେ ଆପଣଙ୍କୁ ଦେଖା କରିବାର ଉଦ୍ଦେଶ୍ୟ ସମ୍ପର୍କରେ ପ୍ରଶ୍ନ କରିବ । ଆପଣ ତାକୁ ଖୁସି କଲା ପରି କହିବେ, ଆମର ପାଞ୍ଚଶହ ଅଶ୍ୱ ପାଇଁ ଯେଉଁ ଦର ଧାର୍ଯ୍ୟ କରିଛନ୍ତି ତାହା ଉଚିତ ହୋଇଛି । କିନ୍ତୁ ରାଜ ଦରବାରରେ ଆପଣ ରାଜାଙ୍କୁ ଦେଖା କରି ଶଗଡ଼ଟିଏ ଧାନର ମୂଲ୍ୟ ପରୀକ୍ଷିବାକୁ ଚାହାନ୍ତୁ । ସେଥିପାଇଁ ସେ ଅନୁମତି ଦେଲେ ହେଲା । ଉପହାର ପାଇ ଖୁସି ହୋଇଥିବା ଦର ନିରୂପକ ଏଥିରେ ସମ୍ମତି ପ୍ରଦାନ କରିବ । କାଲି ରାଜ ଦରବାରରେ ଏ କଥା ସ୍ଥିରୀକୃତ ହେବ ।

ବୋଧିସତ୍ତ୍ୱଙ୍କ କହିବା ଅନୁସାରେ ସବୁ ଘଟଣା ଘଟିଲା ।

ତହିଁ ଆରଦିନ ରାଜ ଦରବାର ଲୋକାରଣ୍ୟରେ ଭରପୂର ହୋଇ-ଗଲା । ରାଜା, ମନ୍ତ୍ରୀ ଓ ପାରିଷଦ ବର୍ଗ ଆସି ପହଞ୍ଚିଲେ । ରାଜାଙ୍କ ଠାରୁ ଅନୁମତି ପାଇ ଅଶ୍ୱ ବ୍ୟବସାୟୀ ଓ ବୋଧିସତ୍ତ୍ୱ ମଧ୍ୟ ଦରବାର ଭିତରକୁ ପ୍ରବେଶ କଲେ ।

ରାଜ ଦରବାରରେ ଅଶ୍ୱ ବ୍ୟବସାୟୀ ରାଜାଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି କହିଲେ, ମହାରାଜ ! ଆପଣଙ୍କ ନୂତନ ଦର ନିରୂପକ ମୋର

ପାଞ୍ଚଶହ ଅଶ୍ୱଙ୍କର ମୂଲ୍ୟ ଶଗଡ଼େ ଧାନ ବୋଲି ଠିକ୍ କରିଛନ୍ତି । ଦୟାକରି କହନ୍ତୁ, ଆପଣଙ୍କ ରାଜ୍ୟରେ ଶଗଡ଼େ ଧାନର ମୂଲ୍ୟ କେତେ ?

ରାଜା ପାଞ୍ଚଶହ ଅଶ୍ୱକୁ ମାତ୍ର ଶଗଡ଼େ ଧାନରେ କିଣା ହୋଇଥିବା ବିଷୟ ଜାଣି ନ ଥିଲେ । ତେଣୁ ସେ ଆଶ୍ଚର୍ଯ୍ୟ ହେଲେ । ଦର ନିୟନ୍ତ୍ରକଙ୍କୁ ଡାକି ପ୍ରଶ୍ନ କଲେ, ଅଶ୍ୱ ବ୍ୟବସାୟୀ ଯାହା କହୁଛନ୍ତି, ତାହା ଠିକ୍ ?

ଦର ନିୟନ୍ତ୍ରକ ଏଥିରେ ରାଜି ହୋଇଗଲେ ।

ରାଜା ବ୍ରହ୍ମଦତ୍ତ ପୁଣି ପ୍ରଶ୍ନ କଲେ, ଶଗଡ଼େ ଧାନର ମୂଲ୍ୟ କେତେ କହି ପାରିବ ?

ଦରନିୟନ୍ତ୍ରକ ସଙ୍ଗେ ସଙ୍ଗେ କହିଲା, ଶଗଡ଼େ ଧାନର ମୂଲ୍ୟଟି କମ୍ ନୁହେଁ ମହାରାଜ ! ମୁଁ ଭାବିଚିନ୍ତି ଏ ଦର ଠିକ୍ କରିଛି । ଆମ ରାଜ୍ୟ ଓ ପଡୋଶୀ ରାଜ୍ୟର ରାଜ କୋଷରେ ଥିବା ଧନକୁ ଏକାଠି କଲେ ସେତିକି ମୂଲ୍ୟ ହେବ ।

ନୂତନ ଦର ନିୟନ୍ତ୍ରକର କଥା ଶୁଣି ଦରବାରରେ ଉପସ୍ଥିତ ଥିବା ସବୁ ଲୋକ ତାଳି ମାରି ହସିଲେ ।

ରାଜ ଦରବାରରେ ଜଣେ ବୟସ୍କ ଲୋକ ଛିଡ଼ା ହୋଇ କହିଲେ, ଆମେ ଏ ପର୍ଯ୍ୟନ୍ତ ଜାଣିଥିଲୁ ଯେ, ଆମ ରାଜ୍ୟର ରାଜ କୋଷରେ ବହୁତ ଧନ ସମ୍ପଦ ରହିଛି । କିନ୍ତୁ ଆଜି ତୁମ କଥାରୁ ଜଣା ପଡ଼ିଲା ଯେ, ଆମ ରାଜ କୋଷରେ ଯାହା ଧନ ଅଛି, ତାହା ଶଗଡ଼େ ଧାନର ମୂଲ୍ୟଠାରୁ ବି ଊଣା । ବାଃ, ଧନ୍ୟତ ବୁଦ୍ଧି !

ଏହା ଶୁଣି ରାଜ ଦରବାରର ସବୁ ଲୋକ ଆଉ ଥରେ ଠୋ...ଠୋ କରି ହସିବାକୁ ଲାଗିଲେ । କିନ୍ତୁ ନୂତନ ଦର ନିୟନ୍ତ୍ରକ ଏ କଥାର ରହସ୍ୟ ଜମା ବୁଝିପାରିଲା ନାହିଁ ।

ଠିକ୍ ଏତିକି ବେଳେ ରାଜ ଦରବାରରେ ଉପସ୍ଥିତ ଥିବା ବୋଧିସତ୍ତ୍ୱ ଛିଡ଼ା ହୋଇ କହିଲେ; ଦୟାକରି ମୋ କଥା ଶୁଣନ୍ତୁ । ବର୍ତ୍ତମାନ କେବଳ ହସିଲେ କିଛି ଫଳ ହେବ ନାହିଁ । ବିଦେଶୀ ଅଶ୍ୱ ବ୍ୟବସାୟୀ ଅନେକ ଝହୁଲେଣି । ସେ ଯଦି ଆମ ଦେଶର କଥା ଅନ୍ୟ ମାନଙ୍କ ଆଗରେ ଯାଇ ପ୍ରକାଶ କରନ୍ତି, ତାହାହେଲେ ଆମ ରାଜ୍ୟର ମାନସମ୍ମାନ ଧୂଳିରେ ପଡ଼ିବ ।

ସେ ପୁଣି କହିଲେ, ପାଞ୍ଚଶହ ଘୋଡ଼ାର ଦାମ୍ ଯେଉଁ ଅର୍ଥରେ ଶଗଡ଼େ ଧାନ, ଠିକ୍ ସେହି ଅର୍ଥରେ ଶଗଡେ ଧାନର ମୂଲ୍ୟ ତିନୋଟି ରାଜ୍ୟର ମୂଲ୍ୟ ସଙ୍ଗେ ସମାନ ।

ତେଣୁ ବର୍ତ୍ତମାନ କଥା ହେଲା, ବିଦେଶୀ ଅଶ୍ୱ ବ୍ୟବସାୟୀଙ୍କର ପାଞ୍ଚଶହ ଅଶ୍ୱର ମୂଲ୍ୟ, ତିନୋଟି ରାଜ୍ୟର ଧନ ସଙ୍ଗେ ସମାନ । ରାଜ୍ୟର ସମ୍ମାନ ରକ୍ଷା ଦୃଷ୍ଟିରୁ ମୁଁ ମହାରାଜାଙ୍କୁ ଅନୁରୋଧ କରୁଛି ଯେ, ସେ ସେହି ଅଶ୍ୱମାନଙ୍କର ଉଚିତ ମୂଲ୍ୟ ଦେଇ ବ୍ୟବସାୟୀଙ୍କୁ ବିଦାୟ ଦିଅନ୍ତୁ । ପରେ ଆମେ ଆମର ଦର ନିୟୁକ୍ତକଙ୍କ କଥାରେ ହସାହସି ହେବା ।

ବୋଧିସତ୍ତ୍ୱଙ୍କ ଉଚିତ ମନ୍ତବ୍ୟ ଶୁଣି ରାଜ ଦରବାରର ସଦସ୍ୟମାନେ ତାଙ୍କର ପ୍ରଶଂସା କରିବାକୁ ଲାଗିଲେ ।

ରାଜା ~~ବୋଧିସତ୍ତ୍ୱ~~ ଏତେବେଳକେ ତାଙ୍କ ଭୁଲ ବୁଝି ପାରିଲେ । ସେ ବୋଧିସତ୍ତ୍ୱଙ୍କୁ ତାଙ୍କ କାର୍ଯ୍ୟରୁ ଅନ୍ତର କରି ମାଳୀକୁ ଏତେବଡ଼ ଗୁରୁତ୍ୱପୂର୍ଣ୍ଣ ଆସନରେ ବସାଇ ଥିବା ଯୋଗୁ ଲଜ୍ଜିତ ହେଲେ । ସେ ତତ୍କ୍ଷଣାତ୍ ବୋଧିସତ୍ତ୍ୱଙ୍କୁ ତାଙ୍କର ପୂର୍ବ କାର୍ଯ୍ୟରେ ନିଯୁକ୍ତ କରି, ମାଳୀକୁ ଉକ୍ତ କାର୍ଯ୍ୟରୁ ବିଦାୟ ଦେଲେ ।

ବୋଧିସତ୍ତ୍ୱ ତାଙ୍କର ପୂର୍ବକାର୍ଯ୍ୟ ଫେରିପାଇ ଅଶ୍ୱ-ବ୍ୟବସାୟୀଙ୍କ ସଙ୍ଗରେ ଅଶ୍ୱର ଦରଦାମ୍ ସମ୍ପର୍କରେ ପୁନର୍ବାର ବିଚାର ଆଲୋଚନା ଚଳାଇଲେ ଓ ତାଙ୍କୁ ଉଚିତ ମୂଲ୍ୟ ଦେଇ ବିଦାୟ ଦେଲେ ।

ଏଥିରେ ରାଜା ଓ ରାଜ୍ୟର ସମସ୍ତ ଆନନ୍ଦ ପ୍ରକାଶ କଲେ ।

# ଆତ୍ମତ୍ୟାଗ

କାଶୀ ରାଜ୍ୟରେ ବ୍ରହ୍ମଦତ୍ତ ନାମରେ ଜଣେ ରାଜା ଥିଲେ । ଘଟଣା ଚକ୍ରରେ ସେ ନର-ରାକ୍ଷସ ପାଲଟି ଗଲେ । ତେଣୁ ପ୍ରଜାମାନେ ତାଙ୍କୁ ସିଂହାସନରୁ ବିତାଡ଼ିତ କରି ରାଜ୍ୟରୁ ତଡ଼ିଦେଲେ ।

ବିତାଡ଼ିତ, ଲଜ୍ଜିତ ଓ ଅପମାନିତ ହୋଇ ବ୍ରହ୍ମଦତ୍ତ ଆହୁରି ଉଗ୍ରମୂର୍ତ୍ତି ଧାରଣ କଲେ । ଘର ସଂସାରହୀନ, ବନ୍ଧୁବାନ୍ଧବହୀନ ବ୍ରହ୍ମଦତ୍ତ ଶପଥ କଲେ ଯେ, ସେ ଶହେ ରାଜାଙ୍କର ଶତପୁତ୍ରଙ୍କୁ ବନ୍ଦୀ କରି ଦେବୀଙ୍କ ନିକଟରେ ବଳିଦେଇ ଅପମାନର ପ୍ରତିଶୋଧ ନେବେ ।

ସତକୁ ସତ ନର-ରାକ୍ଷସ ବ୍ରହ୍ମଦତ୍ତ ତାଙ୍କ ଶପଥ ଅନୁସାରେ ପ୍ରାୟ ଅର୍ଦ୍ଧଶତ ରାଜ ପୁତ୍ରଙ୍କୁ କୌଶଳକ୍ରମେ ନେଇ ଆସି ଗୋଟିକ ପରେ ଗୋଟିଏ ରାଜ ପୁତ୍ରଙ୍କୁ ଦେବୀ କାଳୀଙ୍କ ଆଗରେ ବଳି ଦେଲେ ଓ ବଳି ରକ୍ତରେ ସ୍ନାନ କରି ତାର ପରବର୍ତ୍ତୀ ଅର୍ଦ୍ଧଶତ ରାଜ ପୁତ୍ରଙ୍କୁ ଖୋଜିବାକୁ ଲାଗିଲେ ।

ବ୍ରହ୍ମଦତ୍ତ ରାଜ ପୁତ୍ରମାନଙ୍କୁ ଖୋଜି ବୁଲୁଥିବା ସମୟରେ କୋଶଳ ରାଜ କୁମାରଙ୍କୁ ପୁଷ୍କରିଣୀ ନିକଟକୁ ସ୍ନାନ କରିବାକୁ ଆସୁଥିବା ଦେଖିଲେ । ସେ ପଦ୍ମବଣ ଭିତରେ ଲୁଚି ରହିଲେ ଓ କୋଶଳ ରାଜକୁମାର ଯେତେବେଳେ ପୁଷ୍କରିଣୀ ଜଳ ମଧ୍ୟରେ ପଶି ମୁଣ୍ଡରେ ପାଣି ଛିଞ୍ଚି ବୁଡ଼ ପକାଇବାକୁ ବାହାରିଲେ, ବ୍ରହ୍ମଦତ୍ତ ଠିକ୍ ସେତିକିବେଳେ ତାଙ୍କ ଉପରେ ଆକ୍ରମଣ କରି ତାଙ୍କୁ ଧରି ପକାଇଲେ । ପୋଖରୀ ଭିତରୁ ଭିଡ଼ିଆଣି ବ୍ରହ୍ମଦତ୍ତ ଯେତେବେଳେ ତାଙ୍କୁ କାଳୀଙ୍କ ନିକଟକୁ ନେବାକୁ ବସିଲେ, କୋଶଳ ରାଜକୁମାର ବାଟରେ ବ୍ରହ୍ମଦତ୍ତଙ୍କୁ ପ୍ରଶ୍ନ କଲେ; ମୋତେ ବିନା କାରଣରେ କେଉଁଠାକୁ ନେଉଛନ୍ତି ? ଆପଣଙ୍କର ଉଦ୍ଦେଶ୍ୟ କଣ ?

ବ୍ରହ୍ମଦତ୍ତ ସ୍ପଷ୍ଟ ସ୍ୱରରେ ଉତ୍ତର ଦେଲେ; ଦେବୀ କାଳୀଙ୍କ ନିକଟରେ ତୁମକୁ ବଳି ଦେବା ପାଇଁ ନେଉଛି । ଶହେ ଜଣ ରାଜ କୁମାରଙ୍କୁ ବଳି

ଦେବା ପାଇଁ ଶପଥ କରିଛୁ । ପଞ୍ଚଶ ଜଣ ପର୍ଯ୍ୟନ୍ତ ବଳି ପଡ଼ି ସାରିଲେଣି । ଅବଶିଷ୍ଟ ସଂଖ୍ୟାର ରାଜ ପୁତ୍ରଙ୍କୁ ବଳି ଦେଇ ମୁଁ ମୋର ଶପଥ ପୂରଣ କରିବି ।

କୋଶଳ ରାଜ କୁମାର ଏହା ଶୁଣି ଆଶ୍ଚର୍ଯ୍ୟ ହେଲେ । ତଥାପି ସାହସ ନ ହରାଇ କହିଲେ, ମୋ କଥା ଶୁଣ ! ମୁଁ ପୁଷ୍କରିଣୀକୁ ସ୍ନାନ କରିବାକୁ ବାହାରିଲି ବେଳେ ତକ୍ଷଶିଳାର ଜଣେ ବ୍ରାହ୍ମଣ ପଣ୍ଡିତଙ୍କ ସହିତ ଦେଖାହେଲି । ସେ ଜଣେ ପ୍ରସିଦ୍ଧ କବି । ସେ କହିଲେ, ମୋତେ ଚାରୋଟି ଶ୍ଳୋକ ଶୁଣାଇବେ ଓ ପ୍ରତି ଶ୍ଳୋକ ପାଇଁ ଏକ ଲକ୍ଷ ସ୍ୱର୍ଣ୍ଣ ମୁଦ୍ରା ଗ୍ରହଣ କରିବେ । ମୁଁ ଏଥିରେ ସମ୍ମତ ହୋଇ, ଜଣେ ରାଜ କର୍ମଚାରୀଙ୍କ ସଙ୍ଗରେ ତାଙ୍କୁ ରାଜଦରବାରକୁ ପଠାଇ ଦେଇଛି । ଜଣେ ଜ୍ଞାନୀ ପଣ୍ଡିତଙ୍କ ନିକଟରେ ମୁଁ ପ୍ରତିଜ୍ଞାବଦ୍ଧ । ବ୍ରାହ୍ମଣ ପଣ୍ଡିତ କୋଶଳ ରାଜ ଦରବାରରେ ମୋତେ ଅପେକ୍ଷା କରି ବସିଥିବେ । ତେଣୁ ତୁମକୁ ଅନୁରୋଧ କରୁଛି, ମୋର ପ୍ରତିଜ୍ଞା ପୂରଣ ନିମନ୍ତେ କିଛି ସମୟ ଦିଅ । ମୋର ପ୍ରତିଜ୍ଞା ପୂରଣ ପରେ ପୁନର୍ବାର ତୁମ ନିକଟକୁ ଫେରି ଆସିବି । ତା'ପରେ ମୋତେ ବଳି ଦିବ ।

ବ୍ରହ୍ମଦତ୍ତ ପ୍ରଥମେ କୋଶଳ ରାଜ କୁମାରଙ୍କୁ ବିଶ୍ୱାସ କଲେ ନାହିଁ । କିନ୍ତୁ ରାଜ କୁମାର ଅବଶ୍ୟ ଫେରି ଆସିବେ ବୋଲି ଶପଥ କରିବାରୁ, ତାଙ୍କ କଥାରେ ବ୍ରହ୍ମଦତ୍ତଙ୍କର ବିଶ୍ୱାସ ଜନ୍ମିଲା । ସେ କୋଶଳ ରାଜ-କୁମାରଙ୍କୁ କିଛି ସମୟ ପାଇଁ ଛାଡ଼ିଦେଲେ ।

କୋଶଳ ରାଜକୁମାର ରାଜ ଉଆସକୁ ଫେରିଯାଇ ନିଜ ପ୍ରତିଜ୍ଞା ଅନୁସାରେ ତକ୍ଷଶିଳାର ବ୍ରାହ୍ମଣ ପଣ୍ଡିତଙ୍କୁ ତାଙ୍କର ଚାରୋଟିଯାକ ଶ୍ଳୋକ ଆବୃତ୍ତି କରିବାକୁ କହିଲେ । ଆବୃତ୍ତି ପରେ ସେ ପ୍ରତି ଶ୍ଳୋକ ପାଇଁ

ଏକଲକ୍ଷ କରି ସ୍ୱର୍ଣ୍ଣମୁଦ୍ରା ଦାନ କଲେ । ନିଜର ଇଚ୍ଛା ପୂରଣ କରିବା ହେତୁ ତାଙ୍କ ମନରେ ଆନନ୍ଦ ଅନୁଭବ କଲେ ।

ଏହାପରେ କୋଶଳ ରାଜ କୁମାର ନରରାକ୍ଷସର ସକଳ ବୃତ୍ତାନ୍ତ ଜଣାଇ ପିତାଙ୍କୁ ଯେତେବେଳେ ରାକ୍ଷସ ନିକଟକୁ ଫେରିଯିବା ପାଇଁ କହିଲେ, କୋଶଳ ରାଜା ତାଙ୍କୁ ମନା କରି କହିଲେ, ଜାଣିଶୁଣି ମୃତ୍ୟୁ-ବରଣ କରିବା ନିମନ୍ତେ ଘାତକ ହସ୍ତରେ ନିଜକୁ ସମର୍ପଣ କରିଦେବା ନିର୍ବୋଧତା ହେବ । ଲୋକମାନେ ସ୍ୱେଚ୍ଛାରେ ଏଭଳି ମୃତ୍ୟୁ ବରଣ କରନ୍ତି ନାହିଁ । ଏହା ଆତ୍ମହତ୍ୟା ପାପ ସଙ୍ଗେ ସମାନ ହେବ । ଅବଶେଷରେ ରାଜା ତାଙ୍କର ପୁତ୍ରକୁ ପ୍ରଶ୍ନ କଲେ, ତୋର କ'ଣ ମୃତ୍ୟୁକୁ ଭୟ ନାହିଁ ? ରାଜକୁମାର ପିତାଙ୍କ ମୁହଁରୁ ସବୁ କଥା ଶୁଣିବା ପରେ ଉତ୍ତର ଦେଲେ, ପିତା ! ମୁଁ ମୃତ୍ୟୁ ଅପେକ୍ଷା ପ୍ରତିଜ୍ଞା ଭଙ୍ଗକୁ ବେଶି ଭୟ କରେ ।

ଏହାପରେ କୋଶଳ ରାଜା ତାଙ୍କ ପୁତ୍ରକୁ ଯିବାପାଇଁ ଅନୁମତି ଦେଇ ଧ୍ୟାନମଗ୍ନ ହେଲେ ।

ଅଳ୍ପ ସମୟ ପରେ କୋଶଳ ରାଜକୁମାର ବ୍ରହ୍ମଦତ୍ତ ନିକଟରେ ଯଥା ସ୍ଥାନରେ ପହଞ୍ଚିଲେ ।

ନରରାକ୍ଷସ ବ୍ରହ୍ମଦତ୍ତ କୋଶଳ ରାଜକୁମାରଙ୍କୁ ନିଜ ପାଖରେ ଦେଖି ଅତି ଆଶ୍ଚର୍ଯ୍ୟ ହେଲେ । ରାଜକୁମାର ପ୍ରତିଜ୍ଞା ରକ୍ଷା କରିଥିବାରୁ ତାଙ୍କର ଭୂୟସୀ ପ୍ରଶଂସା କରି କହିଲେ, ମୁଁ ତୁମ ଉପରେ ପ୍ରସନ୍ନ ହେଲି ! ବର୍ତ୍ତମାନ ଗୃରୋଟି ବର ମାଗିପାର ।

କୋଶଳ ରାଜକୁମାର ବ୍ରହ୍ମଦତ୍ତଙ୍କୁ ଗୃରୋଟି ବର ମାଗିଲେ । ପ୍ରଥମ ବର ହେଲା, ନରରାକ୍ଷସ ବ୍ରହ୍ମଦତ୍ତ ତାଙ୍କର ନରହତ୍ୟା ପ୍ରବୃତ୍ତି ପରିହାର କରି ଅହିଂସା ଜୀବନଯାପନ କରନ୍ତୁ । ଦ୍ୱିତୀୟରେ, ଯେଉଁ ରାଜପୁତ୍ର ମାନଙ୍କୁ ହତ୍ୟା କରିବା ପାଇଁ ବନ୍ଦୀ କରି ରଖିଛନ୍ତି ସେ ସମସ୍ତଙ୍କୁ ମୁକ୍ତ କରି

ସେମାନଙ୍କୁ ସେମାନଙ୍କ ନିଜ ନିଜ ଗୃହରେ ନେଇ ପହଞ୍ଚାଇ ଦିଅନ୍ତୁ । ତୃତୀୟ ବର ହେଲା, ତାଙ୍କର ଦେବୀଙ୍କୁ ଯେ ଶତ ରାଜପୁତ୍ର ରକ୍ତରେ ସ୍ନାନ କରାଇବା ପାଇଁ ଯେଉଁ ପ୍ରତିଜ୍ଞା କରିଛନ୍ତି, ସେହି ପ୍ରତିଜ୍ଞା ପରିହାର କରନ୍ତୁ । ଅବଶେଷରେ ଚତୁର୍ଥ ବରରୂପେ ସେ ବ୍ରହ୍ମଦତ୍ତଙ୍କୁ କହିଲେ, ହେ ବ୍ରହ୍ମଦତ୍ତ ! ମୋତେ ଶତାୟୁ କର । ଯେପରି ତୁମେ ନର ରାକ୍ଷସ ପ୍ରବୃତ୍ତିରୁ ମୁକ୍ତ ହୋଇ ପବିତ୍ର ସୁଖମୟ ଜୀବନଯାପନ କରୁଥିବା ମୁଁ ଦେଖିପାରିବି ।

ବ୍ରହ୍ମଦତ୍ତ କୋଶଳ ରାଜ କୁମାରଙ୍କ ଚାରିଗୋଟିଯାକ ବର ପୂରଣ କରିବାର ପ୍ରତିଶ୍ରୁତି ଦେଲେ ।

ଏହାପରେ ଚାରିଗୋଟିଯାକ ବର ଗୋଟିଏ ପରେ ଗୋଟିଏ ପୂରଣ ହେବାକୁ ଲାଗିଲା ।

ନର-ରାକ୍ଷସରେ ପରିଣତ ହୋଇଥିବା ବ୍ରହ୍ମଦତ୍ତ କ୍ରମେ ନିରହଙ୍କାର, ଅହିଂସା, ଧର୍ମାତ୍ମା ରୂପରେ ପୁନର୍ଜନ୍ମ ଲାଭ କଲେ । ଏହାପରେ ସେ କାଶୀ ଧାମକୁ ପ୍ରତ୍ୟାବର୍ତ୍ତନ କଲେ । ଲୋକେ ମହାପୁରୁଷରେ ପରିଣତ ହୋଇଥିବା ବ୍ରହ୍ମଦତ୍ତଙ୍କୁ ଦେଖି ଆନନ୍ଦରେ ବିହ୍ୱଳ ହେଲେ ଏବଂ ତାଙ୍କୁ ପୁନର୍ବାର ରାଜ ସିଂହାସନରେ ବସାଇ ରାଜମୁକୁଟ ପିନ୍ଧାଇ ଦେଲେ ।

କାଶୀ ରାଜ୍ୟରେ ଯଥାର୍ଥରେ ରାମରାଜ୍ୟ ପ୍ରତିଷ୍ଠିତ ହେଲା ।

କୋଶଳ ରାଜକୁମାରଙ୍କ ତ୍ୟାଗ ଶପଥ ଓ ଅମୃତଯୋଗ ଫଳରେ ଏ ପ୍ରକାର ଅଭୂତପୂର୍ବ ପରିବର୍ତ୍ତନ ସଂଘଟିତ ହେଲା ।



# ଜଳପରୀର ଉପକାର

ସେତେବେଳେ ରାଜା ବ୍ରହ୍ମଦତ୍ତ କାଶୀ ନଗରରେ ରାଜୁତି କରୁଥିଲେ । ତାଙ୍କର ଅନେକ ସୁନାମ ଥିଲା ।

ବ୍ରହ୍ମଦତ୍ତଙ୍କ ରାଜୁତି ସମୟରେ ବୋଧିସତ୍ତ୍ୱ ଜଣେ ଧନୀ ଗୃହସ୍ଥଙ୍କ ଘରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ, ଜନ୍ମପରେ ତାଙ୍କର ପିତାମାତା ଅଧିକ ସୁଖ ସୌଭାଗ୍ୟର ଅଧିକାରୀ ହେଲେ ।

ବୋଧିସତ୍ତ୍ୱଙ୍କ ଗୋଟିଏ ସାନ ଭାଇ ଥିଲା । ତା ମନ ସ୍ୱଚ୍ଛ ନ ଥିଲା । ଦୁଇ ଭାଇ ଯେତେବେଳେ ଯୁବକ ଅବସ୍ଥାରେ ପହଞ୍ଚିଲେ, ସେତେବେଳେ ସେମାନଙ୍କ ପିତା ମୃତ୍ୟୁ ମୁଖରେ ପଡ଼ିଲେ । ପିତାଙ୍କ ଶୁଦ୍ଧିଘର କରିବା ପରେ ଦୁଇ ଭାଇ କାଶୀ ନଗରକୁ ବୁଲିବାକୁ ଗଲେ । ବାଟରେ ସେମାନଙ୍କ ଗୃହ ଗାଁ ପଡ଼ିଲା । ଦୁଇଭାଇ କାଶୀ ନଗରକୁ ଯାଉଥିବା ଦେଖି, ଗୃହ ଗାଁର କୃଷକମାନେ ଗୃହ ଜମିର କର ବାବଦକୁ ବୋଧିସତ୍ତ୍ୱଙ୍କ ହସ୍ତରେ ଏକ ହଜାର ସ୍ୱର୍ଣ୍ଣମୁଦ୍ରା ଅର୍ପଣ କଲେ । ଏହା ଦେଖି ବୋଧିସତ୍ତ୍ୱ ସାନ ଭାଇଙ୍କୁ କହିଲେ, ଏଥିରୁ ଅଧେ ମୁଦ୍ରା ତୋର ଘରକୁ ନେଲେ ଭାଗ ହବ । ସ୍ୱର୍ଣ୍ଣମୁଦ୍ରା ତାଙ୍କ ଗଣ୍ଠିରେ ରହିଲା ।

ଦୁଇଭାଇ ଯାଉ ଯାଉ ବାଟରେ ଗୋଟିଏ ନଦୀ ପଡ଼ିଲା । ନଦୀ ପାରି କରାଇ ଦେବାକୁ ନାଉରୀ ନଥାଏ । ତେଣୁ ନାଉରୀକୁ ଅପେକ୍ଷା କରିବା ଅବସରରେ ଦୁଇଭାଇ ଖାଇପିଇ ସାରି ନଈକୂଳରେ ବିଶ୍ରାମ ନେଲେ । ବୋଧିସତ୍ତ୍ୱ ବିଶ୍ରାମ ନେଉ ନେଉ ଶୋଇପଡ଼ିଲେ ।

ବୋଧିସତ୍ତ୍ୱଙ୍କ ସାନ ଭାଇ ମୁଣ୍ଡରେ ମନ୍ଦଚିନ୍ତା ଖେଳିଲା । ସମୁଦାୟ ଅର୍ଥ ମାରିନେବା ପାଇଁ ସେ ଏକ ଅଭିନବ ଯୋଜନା କଲା । ବୋଧିସତ୍ତ୍ୱଙ୍କ ମୁଣ୍ଡ ପାଖରେ ମୁଦ୍ରା ବନ୍ଧା ହୋଇଥିବା ଗଣ୍ଠିଲିଟି ରଖା ହୋଇଥାଏ । ସାନ ଭାଇ ଅବିକଳ ସେହିପରି ଏକ ଗଣ୍ଠିଲିରେ ଗୋଡ଼ି ପଥର ପୁରାଇ ତାକୁ ନିଜ ପାଖରେ ଲୁଚାଇ ରଖିଲା ।

ନାଉରୀ ନାଆ ପାଖରେ ପହଞ୍ଚିବା ପରେ ଦୁଇଭାଇ ନାଆରେ ବସିଲେ । ସାନଭାଇ ମଝି ନଈରେ ସେହି ଗୋଡ଼ ପଥର ଗଣ୍ଠିଲିଟିକୁ ଝିଙ୍କାଇ ପକାଇ ବଡ଼ ଭାଇକୁ କହିଲା, ଭାଇ ଟଙ୍କା ଗଣ୍ଠିଲିଟା ନଈରେ ପଡ଼ିଗଲା । ଏବେ କରିବା କଣ ? ବୋଧିସତ୍ତ୍ୱ ସାନ ଭାଇକୁ ଆଶ୍ୱାସନା ଦେଇ କହିଲେ, ଗଲାତ ଗଲା । ସେଥିପାଇଁ ଏତେ ବିବ୍ରତ ହୋଇ ଲାଭ କଣ ?

ବୋଧିସତ୍ତ୍ୱଙ୍କ ମନରେ କୌଣସି ଚିନ୍ତା ନଥିଲା । ତାଙ୍କ ମନରେ ସାନ ଭାଇ ପ୍ରତି ମଧ୍ୟ ଛଳ କପଟ ନ ଥାଏ । ସେ ସାନ ଭାଇର ମତି ଗତି ସମ୍ପର୍କରେ କୌଣସି ସନ୍ଦେହ ପୋଷଣ କରୁ ନଥାନ୍ତି । ବରଂ ସାନ ଭାଇ ବୋଲି ତାକୁ ସ୍ନେହ ଆଦର ଦେଖାଉଥାନ୍ତି । ସାନଭାଇ ଯେ, ଯୋଜନା କରି ଗଣ୍ଠିଲିଟିକୁ ମଝି ନଈରେ ପକାଇ ଦେଇଛି, ସେ ବିଷୟରେ ସେ କଳ୍ପନା ସୁଦ୍ଧା କରି ନ ଥାନ୍ତି ।

ଇତି ମଧ୍ୟରେ ଆଉ ଏକ ଘଟଣା ଘଟିଥାଏ । ବୋଧିସତ୍ତ୍ୱ ଖାଇ ବସିଲାବେଳେ ନିଜ ଖାଦ୍ୟରୁ କିଛି ନେଇ ନଈରେ ପକାଇ ଦେଉଥାନ୍ତି । ନଈରେ ଥିବା ଜଳ ପକ୍ଷୀ ସେ ଖାଦ୍ୟ ଖାଇ ନୂତନ ଶକ୍ତି ଲାଭ କରିଥାଏ । ସେ ଭାବି ନେଇଥାଏ ଯେ, ବୋଧିସତ୍ତ୍ୱ ସାମାନ୍ୟ ମାନବ ନୁହଁନ୍ତି । ସେ ଏକ ମହାନ୍ ଆତ୍ମା । ସେ ବୋଧିସତ୍ତ୍ୱଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ତାଙ୍କର ଗତିବିଧି ଉପରେ ନଜର ରଖିଥାଏ ।

କିନ୍ତୁ ସାମାନ୍ୟ ଭାଇ ଏତେ ଉତ୍କଣ୍ଠା ଯୋଗୁ ତରବରରେ ଗୋଡ଼ ପଥର ଗଣ୍ଠିଲି ପରିବର୍ତ୍ତେ ପ୍ରକୃତ ସ୍ୱର୍ଣ୍ଣ ମୁଦ୍ରା ଗଣ୍ଠିଲିଟିହିଁ ପକାଇ ଦେଇଥାଏ ।

ଗଣ୍ଠିଲି ପାଣିରେ ପଡ଼ିବା ପରେ, ଜଳପରି ଗୋଟିଏ ପ୍ରକାଣ୍ଡ ମାଛକୁ ଭିନ୍ନ ସେହି ଗଣ୍ଠିଲିଟି ଗିଳାଇ ଦେଲା । ତାପରେ ଜଳପରୀ ସେହି ମାଛ ଉପରେ ନଜର ରଖିଲା ।

କାଶୀରୁ ଫେରି ଆସିବା ପରେ ବୋଧିସତ୍ତ୍ୱଙ୍କ ସ୍ନାନ ଘାଇ ଟଙ୍କା ଗଣ୍ଠିଲିଟା ପକାଇ ଦେଇଥିବା ଯୋଗୁ ମନ ମଧ୍ୟରେ ଅତ୍ୟନ୍ତ ଯନ୍ତ୍ରଣା ଅନୁଭବ କଲା । କ୍ରମେ ସେ ଅସୁସ୍ଥ ବୋଧ କରି ବିଛଣାରେ ପଡ଼ି ରହିଲା ।

କିଛିଦିନ ପରେ ଜଣେ ଧୀବର ନଈରେ ଜାଲ୍ ପକାଇ ସେହି ଗଣ୍ଠିଲି ଗିଳିଥିବା ବଡ଼ ମାଛଟାକୁ ପାଇଲା । ମାଛଟାକୁ କାନ୍ଧରେ କାଢ଼େଇ ସେ ବଜାର ଭିତରେ ବୁଲୁଥିଲା ବେଳେ, ଲୋକମାନେ ତାକୁ ଦେଖି ଆଶ୍ଚର୍ଯ୍ୟ ହେଲେ । କେହି କେହି ଧୀବରକୁ ମାଛର ଦାମ୍ ପଚାରିବାରୁ, ସେ କହିଲା, ମାଛର ଦାମ୍ ଏକହଜାର ଏକ ସ୍ୱର୍ଣ୍ଣମୁଦ୍ରା । ଧୀବରର କଥା ଶୁଣି ଲୋକେ ଭାବିଲେ, ତାର ମୁଣ୍ଡ ଖରାପ ।

ଶେଷକୁ ଧୀବର ମାଛଟିକୁ ଧରି ବୋଧିସତ୍ତ୍ୱଙ୍କ ଘରେ ପହଞ୍ଚିଲା । ବୋଧିସତ୍ତ୍ୱ ତାକୁ ମାଛର ଦାମ୍ ପଚାରିବାରୁ, ସେ କହିଲା, କେବଳ ଆପଣଙ୍କ ପାଇଁ ମାଛର ଦାମ ମାତ୍ର ଏକ ଟଙ୍କା । ରଖିବେ ଯଦି ରଖି ନିଅନ୍ତୁ ।

ମୋ ପାଇଁ ମାଛର ଦାମ୍ ଏକ ଟଙ୍କା ହେଲେ, ଅନ୍ୟମାନଙ୍କ ପାଇଁ କେତେ ହେବ ? ବୋଧିସତ୍ତ୍ୱ ପ୍ରଶ୍ନ କଲେ ।

ଧୀବର ଅବିଚଳିତ କଣ୍ଠରେ ଉତ୍ତର ଦେଲା, ଅନ୍ୟମାନଙ୍କ ପାଇଁ ଏହାର ମୂଲ୍ୟ ଏକ ହଜାର ଏକ ସ୍ୱର୍ଣ୍ଣମୁଦ୍ରା ।

ବୋଧିସତ୍ତ୍ୱ ଧୀବର କଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ସେ ଯାହାହେଉ, ଧୀବରକୁ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଦେଇ ମାଛଟିକୁ କିଣି ନେଇଗଲେ ।

ବୋଧିସତ୍ତ୍ୱଙ୍କ ସ୍ତ୍ରୀ ନିଜ ହାତରେ ମାଛଟିକୁ କାଟିଲେ । ଦେଖି ଆଶ୍ଚର୍ଯ୍ୟ ହେଲେ, ମାଛର ପେଟ ଭିତରେ ଏକ ଗଣ୍ଠିଲି ଅଛି । ତହିଁରେ ସ୍ୱର୍ଣ୍ଣମୁଦ୍ରା ରହିଛି । ସେ ସ୍ୱାମୀଙ୍କୁ ଉଚ୍ଚ କଣ୍ଠରେ ଡାକ ପକାଇଲେ ।

ବୋଧିସତ୍ତ୍ୱ ମାଛ ପାଖକୁ ଯାଇ, ତାର ପେଟ ଭିତରୁ ବାହାର ଥିବା ଗଣ୍ଠିଲିଟିକୁ ସଙ୍ଗେ ସଙ୍ଗେ ଚିହ୍ନି ପାରିଲେ । କହିଲେ, ଏହା ନିଶ୍ଚୟ ଆମର ଗଣ୍ଠିଲି । ଯାହାକୁ ସାନଭାଇ ନଈ ମଝିରେ ହରାଇଥିଲା ।

ଏହାପରେ ଧୀବରର ପ୍ରକୃତ ପରିଚୟ ପାଇବା ନିମନ୍ତେ ତାଙ୍କ ମନ ଅଧୀର ହେଲା । କାରଣ ଧୀବର ତାଙ୍କ ମାଛର ମୂଲ୍ୟ ମାତ୍ର ଗୋଟିଏ ସ୍ୱର୍ଣ୍ଣମୁଦ୍ରା ବୋଲି କହିବା ସ୍ଥଳେ, ଅନ୍ୟମାନଙ୍କ ପାଇଁ ତାର ମୂଲ୍ୟ ଏକ ହଜାର ଏକ ସ୍ୱର୍ଣ୍ଣମୁଦ୍ରା ବୋଲି କହିଥିଲା । ଏଥିରୁ ଜଣା ପଡ଼ୁଛି ଯେ, ମାଛର ପେଟ ଭିତରେ ଥିବା ସ୍ୱର୍ଣ୍ଣମୁଦ୍ରାର ଗଣ୍ଠିଲି କଥା ସେ ଜାଣିଥିଲା ଯେ, ସେହି ଗଣ୍ଠିଲିଟି ତାଙ୍କର ।

କିନ୍ତୁ ଧୀବରକୁ ଖୋଜି ସେ ପାଇଲେ ନାହିଁ ।

ସେ ଦିନ ରାତିରେ ଶୋଇ ଶୋଇ ସପନ ଦେଖିଲେ, ଜଳପରି ତାଙ୍କୁ କହୁଛି, ହେ ମହାଶୟ ! ଆପଣ ନଈ କୂଳରେ ବସି ଭୋଜନ କଲାବେଳେ ନଈ ଭିତରକୁ କିଛି ଖାଦ୍ୟ ପକାଇ ଦେଇଥିଲେ । ତାହା ଖାଇ ମୋର ଅଶେଷ ଉପକାର ହେଲା । ତେଣୁ ଆପଣଙ୍କ ଟଙ୍କା ଗଣ୍ଠିଲି ନଈ ମଝିରେ ପଡ଼ିଯିବା ଦେଖି; ଗୋଟିଏ ବଡ଼ ମାଛକୁ କହି ସେ ଗଣ୍ଠିଲି ଗିଳାଇଦେଲି । ପରେ ଧୀବର ଆସି ଉକ୍ତ ନଈରେ ମାଛ ମାରିଲା । ସେହି ବଡ଼ ମାଛ ତାର ଜାଲରେ ପଡ଼ିଲା । ଧୀବର ଜାଲରେ ଉକ୍ତ ମାଛ ପଡ଼ିବା ଦେଖି, ମୁଁ ଧୀବର ଦେହରେ ପଶି ତାକୁ ଆପଣଙ୍କ ଗୃହକୁ ଆଣାଇଲି । ଏ ଯେଉଁ ସ୍ୱର୍ଣ୍ଣମୁଦ୍ରା ଥିବା ଗଣ୍ଠିଲିଟି ପାଇଲେ, ତାହା ପ୍ରକୃତରେ ଆପଣଙ୍କର ।

ଆପଣଙ୍କ ଭାଇ ଆପଣଙ୍କୁ ପ୍ରତାରଣା କରି ସବୁ ଅର୍ଥ ଆତ୍ମସାତ କରିବା ଉଦ୍ଦେଶ୍ୟରେ ତାକୁ ନଈ ମଝିରେ ଜାଣିଶୁଣି ପକାଇ ଦେଇଥିଲା । ଏଣୁ, ଏ ଅର୍ଥରେ ତାର ଭାଗ ନାହିଁ ।

ବୋଧିସତ୍ତ୍ୱ ଏଥର ସବୁକଥା ବୁଝି ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ସାନ ଭାଇକୁ ତାର ଭାଗରୁ ବଞ୍ଚିତ କରିବାକୁ ଚାହିଁଲେ ନାହିଁ । ସେ ସାନଭାଇକୁ ପରଦିନ ସକାଳୁ ଡକାଇ ପଠାଇ ମାଛ ପେଟରୁ ଗଣ୍ଠିଲି ବାହାରିବା କଥା ପ୍ରକାଶ କଲେ ଓ ସ୍ୱର୍ଣ୍ଣ ମୁଦ୍ରାରୁ ଭାଗ ଦେଲେ ।

ସାନଭାଇ ବୁଝିଲା, ବଡ଼ ଭାଇ ଖୁବ୍ ମହତ୍ । ସେ ତାଙ୍କ ପାଖରେ କୃତଜ୍ଞ ରହିଲା ।



# ରାଜା ସମ୍ବର

ପୂର୍ବକାଳରେ କାଶୀ ରାଜ୍ୟରେ ବ୍ରହ୍ମଦତ୍ତ ନାମରେ ଜଣେ ରାଜାଥିଲେ । ସେ ଶତପୁତ୍ରର ଜନକ ଥିଲେ । ପୁତ୍ରମାନଙ୍କର ବୟସ ହେବାପରେ ସେ ସେମାନଙ୍କୁ ଉପଯୁକ୍ତ ଗୁରୁମାନଙ୍କ ନିକଟକୁ ବିଦ୍ୟାଶିକ୍ଷା ପାଇଁ ପଠାଇ ଦେଉଥିଲେ । ରାଜା ବ୍ରହ୍ମଦତ୍ତଙ୍କର ସର୍ବ କନିଷ୍ଠ ପୁତ୍ରର ନାମଥିଲା, 'ସମ୍ବର' । ସେ ସମ୍ବରକୁ ମହାଜ୍ଞାନୀ ବୋଧିସତ୍ତ୍ୱଙ୍କ ନିକଟକୁ ବିଦ୍ୟାଶିକ୍ଷା ପାଇଁ ପଠାଇ ଦେଲେ ।

ସମ୍ବର ବୋଧିସତ୍ତ୍ୱଙ୍କ ପାଖରେ ରହି ବିଦ୍ୟାଶିକ୍ଷା କରିବାକୁ ଲାଗିଲେ । ଅନେକ ବର୍ଷ ପରେ ସେ ସକଳ ଶାସ୍ତ୍ରରେ ପ୍ରବୀଣତା ଲାଭ କଲେ ।

ଇତି ମଧ୍ୟରେ ରାଜା ବ୍ରହ୍ମଦତ୍ତଙ୍କର ଉଣେଶତ ପୁତ୍ର ବିଭିନ୍ନ ଗୁରୁଙ୍କ ନିକଟରେ ବିଦ୍ୟାଶିକ୍ଷା ସମାପ୍ତ କରି ରାଜାଙ୍କ ନିକଟକୁ ଫେରିଆସୁଥିଲେ । ରାଜା ସେମାନଙ୍କୁ ଦେଖି ଖୁସି ହୋଇ ତାଙ୍କ ରାଜ୍ୟର ଶ୍ରେଷ୍ଠ ଶ୍ରେଷ୍ଠ ଅଞ୍ଚଳକୁ ଶାସନ ପଦରେ ପଠାଇ ଦେଉଥିଲେ ।

ସମସ୍ତଙ୍କ ପରେ ସମ୍ବରଙ୍କ ପାଳି । ତାଙ୍କର ମଧ୍ୟ ବିଦ୍ୟାଶିକ୍ଷା ସମାପ୍ତ ହୋଇ ଆସୁଥିଲା । ସେ ଅଗ୍ରଜମାନଙ୍କର ବିଦ୍ୟାଶିକ୍ଷା ସମାପ୍ତ ହେବାପରେ ଶାସକ ପଦରେ ଅଧିଷ୍ଠିତ ହେବା ସମ୍ବାଦ ସଂଗ୍ରହ କରିଥିଲେ । ଦିନେ ସେ ଗୁରୁ ବୋଧିସତ୍ତ୍ୱଙ୍କୁ ଏ ସମ୍ପର୍କରେ ପ୍ରଶ୍ନ କରିବାରୁ ବୋଧିସତ୍ତ୍ୱ କହିଲେ; ବତ୍ସ ସମ୍ବର ! ପିତାଙ୍କ ନିକଟରେ ରହି ତାଙ୍କର ବୃଦ୍ଧାବସ୍ଥାରେ ଭକ୍ତି ସହକାରେ ତାଙ୍କର ସେବା କରିବା ପୁତ୍ରର ପରମ କର୍ତ୍ତବ୍ୟ । ରାଜା ହେବା ବଡ଼ କଥା ନୁହେଁ । ସମ୍ବର ଏ ଉପଦେଶକୁ ଗ୍ରହଣ କଲେ ।

ଦିନେ ରାଜା ବ୍ରହ୍ମଦତ୍ତ ବୋଧିସତ୍ତ୍ୱଙ୍କ ଆଶ୍ରମରେ ପହଞ୍ଚିଲେ । ସମ୍ବର ପିତାଙ୍କୁ ଦେଖି ଖୁସି ହୋଇ ତାଙ୍କର ସତ୍କାର କଲେ । ତା'ପରେ ତାଙ୍କୁ ଆଣି ଗୁରୁ ବୋଧିସତ୍ତ୍ୱଙ୍କ ନିକଟରେ ପହଞ୍ଚାଇ ଦେଲେ । ରାଜା ବ୍ରହ୍ମଦତ୍ତ ଗୁରୁଙ୍କ ନିକଟରେ ସମ୍ବରଙ୍କୁ ପ୍ରଶ୍ନ କଲେ, ତୁମର କ'ଣ ବିଦ୍ୟାଶିକ୍ଷା ସମାପ୍ତ ହୋଇନାହିଁ ?

ଏହା ଶୁଣି ସମ୍ବର ବିନୀତ କଣ୍ଠରେ ଉତ୍ତର ଦେଲେ, ପିତୃଦେବ ! ଗୁରୁଦେବଙ୍କ ଦୟାରୁ ମୁଁ ବର୍ତ୍ତମାନ ସମସ୍ତ ବିଦ୍ୟା ଅର୍ଜ୍ଜନ କରିସାରିଛି ।

ବ୍ରହ୍ମଦତ୍ତ ଖୁସି ହୋଇ କହିଲେ, ଏଥର ରାଜ୍ୟ ଶାସନ କରିବାକୁ ପଡ଼ିବ । କାଶୀ ରାଜ୍ୟର ଯେ କୌଣସି ପ୍ରାନ୍ତୀୟ ରାଜ୍ୟ ସ୍ୱଇଚ୍ଛାରେ ବାଛି ନେଇ ପାରୁ ।

ସମ୍ବର ଏହା ଶୁଣି କହିଲେ, ପିତୃଦେବ ! ମୁଁ ଆପଣଙ୍କର ସର୍ବକନିଷ୍ଠ ସନ୍ତାନ । ଇତି ମଧ୍ୟରେ ମୋର ଅଗ୍ରଜମାନେ ରାଜ୍ୟ ଶାସନ କରିବା ନିମନ୍ତେ ଆପଣଙ୍କଠାରୁ ଦୂରରେ ଅଛନ୍ତି । ମୁଁ ଯଦି ଦୂରକୁ ଚାଲିଯାଏ, ଆପଣଙ୍କ ଖବର ଅନ୍ତର ବୁଝିବ କିଏ ? ତେଣୁ ମୁଁ ରାଜ୍ୟର

ଶାସକ ହେବାକୁ ଗୃହେଁ ନାହିଁ । ମୁଁ ଅପଣଙ୍କର ସେବା କରି କାଳ-ଯାପନ କରିବାକୁ ଗୃହେଁ ।

ସମ୍ବରଙ୍କ କଥା ଶୁଣି ରାଜା ବ୍ରହ୍ମଦତ୍ତ ଖୁବ୍ ଖୁସିହେଲେ । ସମ୍ବର କାଶୀ ରାଜ୍ୟର ରାଜଧାନୀକୁ ଫେରିଆସିବା ପରେ ରାଜା ବ୍ରହ୍ମଦତ୍ତଙ୍କ ପାଖରେ ରହିଲେ । ଆବଶ୍ୟକ ସ୍ଥଳେ ସେ ଗୁରୁ ବ୍ରହ୍ମଦତ୍ତଙ୍କୁ ଦେଖା କରି ତାଙ୍କର ନିର୍ଦ୍ଦେଶରେ ଚାଲୁଥାନ୍ତି ।

ଥରେ ରାଜପୁତ୍ର ସମ୍ବର ଗୁରୁଙ୍କ ନିର୍ଦ୍ଦେଶକ୍ରମେ ରାଜ୍ୟର କେତେକ ଅନାବାଦୀ ଜମିକୁ ତହିଁରେ ଫଳଫୁଲ ଗଛମାନ ରୋପଣ କଲେ । କ୍ରମେ ତାହା ଏକ ସୁନ୍ଦର ଉଦ୍ୟାନରେ ପରିଣତ ହେଲା । ରାଜ୍ୟର ପ୍ରସିଦ୍ଧ ବ୍ୟକ୍ତି-ମାନେ ସେହି ଉଦ୍ୟାନ ଦର୍ଶନ କରିବାକୁ ଗଲେ । କ୍ରମାନ୍ୱୟରେ ସେହି ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ସଙ୍ଗରେ ରାଜପୁତ୍ର ସମ୍ବରଙ୍କର ସାକ୍ଷାତ ପରିଚୟ ଘଟିଲା ।

ଆଉଥରେ ରାଜପୁତ୍ର ସମ୍ବର ପିତାଙ୍କ ଅନୁମତି ନେଇ ସହରର ଶିଶୁ-ମାନଙ୍କୁ ଅନେକ ସୁମିଷ୍ଟ ଖାଦ୍ୟ ଓ ଖେଳନା ବଣ୍ଟନ କଲେ । ପୁଣିଥରେ ସେ ରାଜ୍ୟର କର୍ମଚାରୀ ଓ ସେନାବାହିନୀଙ୍କୁ ଡାକି ଏକ ମସ୍ତବଡ଼ ଭୋଜିର ଆୟୋଜନ କଲେ । ବିଦେଶୀମାନଙ୍କ ପାଇଁ ଏକ ସୁନ୍ଦର ପ୍ରାସାଦ ନିର୍ମାଣ କରାଇଲେ । ଏ ସମସ୍ତ କାରଣରୁ ସେ ସମଗ୍ର କାଶୀ ରାଜ୍ୟରେ ତଥା ପଡ଼ୋଶୀ ରାଜ୍ୟରେ ଅତ୍ୟନ୍ତ ଜନପ୍ରିୟ ହୋଇ ଉଠିଲେ ।

ଏମିତି ଭାବରେ ରାଜପୁତ୍ର ସମ୍ବର ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ହେଲେ ।

ଏଣେ ରାଜା କ୍ରମେ ବୃଦ୍ଧ ହୋଇ ଆସୁଥିଲେ । ତାଙ୍କର ଅନ୍ତିମ ଅବସ୍ଥା ପାଖେଇ ଆସୁଥିଲା । ଏହା ଜାଣି ରାଜା ବ୍ରହ୍ମଦତ୍ତ ଦିନେ ତାଙ୍କ ସଭାର ସମସ୍ତ ମନ୍ତ୍ରୀଙ୍କୁ ପାଖକୁ ଡକାଇ କହିଲେ, ମୋର ଅନ୍ତିମ ଦିନ ପାଖେଇ ଆସିଲାଣି । ମୋ ପରେ ମୋର ଶହେ ପୁଅ ଆସି ରାଜ ସିଂହାସନରେ

ଆରୋହଣ କରିବାକୁ ଚାହିଁବେ । କିନ୍ତୁ ତୁମ୍ଭମାନଙ୍କୁ ଶୁଣାଇ ଦେଇ ଯାଉଛି; ତୁମ୍ଭେମାନେ ମୋର ସମସ୍ତ ପୁତ୍ରଙ୍କୁ ଡକାଇ ଏକାଠି କରି, ସେମାନଙ୍କ ଯୋଗ୍ୟତା ବିଚାର କରିବ । ଯାହାକୁ ଯୋଗ୍ୟତମ ପାତ୍ର ବୋଲି ବିବେଚନା କରିବ, ତାକୁ ସିଂହାସନରେ ବସାଇବ ।

ରାଜା ବ୍ରହ୍ମଦତ୍ତଙ୍କ ମୃତ୍ୟୁପରେ ମନ୍ତ୍ରୀମାନେ ସମସ୍ତ ରାଜ ପୁତ୍ରଙ୍କୁ ଡ଼କାଇ ସେମାନଙ୍କ କାର୍ଯ୍ୟରେ ଅନୁଶୀଳନ କଲେ । ତାପରେ ସେମାନେ ସ୍ଥିର କଲେ ଯେ, କନିଷ୍ଠ ପୁତ୍ର ସମ୍ବରହିଁ ସମସ୍ତଙ୍କ ମଧ୍ୟରେ ଯୋଗ୍ୟତମ । ତେଣୁ ମହା ସମାରୋହରେ ସେମାନେ ସମ୍ବରଙ୍କୁ ରାଜସିଂହାସନ ଅର୍ପଣ କଲେ । ରାଜପୁତ୍ର ସମ୍ବର ରାଜସିଂହାସନ ଆରୋହଣ କରିବା ପରେ ଗୁରୁ ବ୍ରହ୍ମଦତ୍ତଙ୍କ ପରାମର୍ଶ କ୍ରମେ ରାଜକାର୍ଯ୍ୟ ପରିଚାଳନା କଲେ ।

କିନ୍ତୁ ଅନ୍ୟ ଉନେଶତ ଭାଇ ଏପରି ସିଦ୍ଧାନ୍ତକୁ ଗ୍ରହଣ କଲେନାହିଁ ସମସ୍ତେ ଏକାଠି ହୋଇ, ସମ୍ବରଙ୍କ ନିକଟକୁ ଏକ ଦୂତପଠାଇ ସମ୍ବାଦ ଦେଲେ, ସମ୍ବର ଶୀଘ୍ର ରାଜସିଂହାସନ ପରିତ୍ୟାଗ କରନ୍ତୁ । ନ ହେଲେ ପରିସ୍ଥିତି ଭୟାବହ ହେବ ।

ଦୂତ ମୁଖରୁ ଏ ପ୍ରକାର ଭୀତିପ୍ରଦ ବାର୍ତ୍ତା ପାଇ ସମ୍ବର ସହସା ବୋଧିସତ୍ତ୍ୱଙ୍କୁ ଦେଖା କଲେ । ବୋଧିସତ୍ତ୍ୱ ପରାମର୍ଶ ଦେଲେ, ଭାଇମାନଙ୍କ ସଙ୍ଗରେ ଶତ୍ରୁତା କରିବା ଉଚିତ ନୁହେଁ । ତେଣୁ ଭାଇମାନଙ୍କ ମଧ୍ୟରେ ପିତୃରାଜ୍ୟ ସମାନ ଭାବରେ ବାଣ୍ଟିନେବା ଭଲହେବ ।

ସମ୍ବର ଗୁରୁ[illegible]ଙ୍କ ପରାମର୍ଶ କ୍ରମେ ରାଜ୍ୟ ଭାଗକରି ନେବା ପ୍ରସ୍ତାବ ଦେଲେ ।

ସମ୍ବରଙ୍କ ଜେଷ୍ଠଭ୍ରାତା 'ଉପୋସଥ' ସମ୍ବରଙ୍କ ପ୍ରସ୍ତାବ ଶୁଣି ଖୁବ୍ ଆଶ୍ଚର୍ଯ୍ୟ ହେଲେ । କାରଣ ସେ ଆଶା କରିଥିଲେ, ସମ୍ବର ଦୂତର କଥା ଶୁଣି ବିବ୍ରତ ହେବେ । ସେ ଅନ୍ୟ ଭାଇମାନଙ୍କୁ ରାଜ୍ୟ ଦେବା ପରିବର୍ତ୍ତେ

କଠିନ ଦଣ୍ଡ ଦେବାର ବ୍ୟବସ୍ଥା କରିବେ । କିନ୍ତୁ ସମ୍ବରଙ୍କ କଥା ଶୁଣି ତାଙ୍କ ମନ୍ତ୍ରୀ ଦୂରେଇ ଗଲେ । ସେ ଅନ୍ୟ ଅଠାନରେ ଭାଇଙ୍କୁ ଏକାଠି କରି କହିଲେ, ଭାଇମାନେ ଆମେ ଜାଣିଥିଲେ ସେ; ସମ୍ବର ସିଂହାସନ ଲୋଭକରି ଆମ୍ଭମାନଙ୍କୁ ପିତୃ ଅର୍ଜିତ ରାଜ୍ୟରୁ ବଂଚିତ କରି, ଆମ ପ୍ରତି ଶତ୍ରୁତା ଆଚରଣ କରୁଛନ୍ତି । କିନ୍ତୁ ତାହା ନୁହେଁ । ସେ ନ୍ୟାୟ ବିଚାର କରି ପ୍ରଜା କୂଳର ପ୍ରିୟଭାଜନ ହୋଇ ପାରିଛନ୍ତି । ଏପରି ସରଳ ବ୍ୟକ୍ତି ପ୍ରତି ଆମେ ଶତ୍ରୁତା ଆଚରଣ କରିବା ଉଚିତ ହେବ ନାହିଁ ।

ଜ୍ୟେଷ୍ଠ ଭ୍ରାତା ଉପୋସଥଙ୍କ କଥା ଶୁଣି ଅନ୍ୟ ଜଣେ ଭାଇ ପ୍ରଶ୍ନ କଲେ, ତେବେ ଆମର ବର୍ତ୍ତମାନ କର୍ତ୍ତବ୍ୟ କଣ ?

ଉପୋସଥ ଉତ୍ତର ଦେଲେ; ମୋ ବିଚାରରେ ଆମ୍ଭେମାନେ ସମ୍ବର ସହିତ ଅପୋଷ ମିଳାମିଶା କରିବା ଉଚିତ ହେବ । ପିତାଙ୍କର ସିଂହାସନ ଉପରେ ଆମ ସମସ୍ତଙ୍କର ଅଧିକାର ରହିଛି । କିନ୍ତୁ ସମସ୍ତେ ଏକାଠି ଉକ୍ତ ସିଂହାସନ ଆରୋହଣ କରି ପାରିବା ନାହିଁ । ତେଣୁ ଚାଲ; ସମସ୍ତେ ସମ୍ବରଙ୍କୁ ରାଜା ବୋଲି ସ୍ୱୀକାର କରିନେବା । ତା' ହସ୍ତରେ ଆମେ ଯାହା ପାଇଥିବା ସମ୍ପତ୍ତି ସମର୍ପଣ କରି ତା' ହାତ ମୁଠାକୁ ଠାଣି କରିବା । ରାଜ୍ୟର ନିରାପତ୍ତା ନିମନ୍ତେ ଆମେ ପୂର୍ବପରି ବିଭିନ୍ନ ରାଜ୍ୟର ଶାସନ ପରିଚାଳନା କରିବା ।

ଜ୍ୟେଷ୍ଠ ରାଜପୁତ୍ର ଉପୋସଥଙ୍କ ପ୍ରସ୍ତାବରେ ସମସ୍ତେ ସମ୍ମତ ହେଲେ । ସେମାନେ ନିଜର ସୈନ୍ୟମାନଙ୍କୁ ସଙ୍ଗରେ ନେଇ ରାଜଧାନୀକୁ ବାହାରିଲେ । ସମ୍ବରଙ୍କ ଜୟ ଜୟକାରରେ ଆକାଶମାର୍ଗ କମ୍ପି ଉଠିଲା ।

ସମ୍ବର ଅତି ଆନନ୍ଦରେ ଭାଇମାନଙ୍କୁ ସ୍ୱାଗତ କରାଇ ସମ୍ମାନିତ କଲେ । ଆଳାପ ଆଲୋଚନା ବେଳେ ଉପୋସତ ସମ୍ବରଙ୍କୁ ପ୍ରଶ୍ନ କଲେ—

ଆମେ ତୋର ବ୍ୟବହାର ଓ କାର୍ଯ୍ୟକଳାପରେ ଅତିଶୟ ସନ୍ତୁଷ୍ଟ ଅଛୁ ତୋର ଧର୍ମାଚରଣ ଅତ୍ୟନ୍ତ ପ୍ରଶଂସନୀୟ । କିନ୍ତୁ ଏ ସବୁ ତୁ କେଉଁଠି ଶିଖିଲୁ, ତାହା ଜାଣିବା ପାଇଁ ଆଗ୍ରହ ହେଉଛି ।

ସମ୍ବର ଖୁସିହୋଇ କହିଲେ, ମୋର ଶିକ୍ଷାଦାତା ହେଉଛନ୍ତି ଗୁରୁଦେବ ବୋଧିସତ୍ତ୍ୱ । ତାଙ୍କର ପରାମର୍ଶରେ ମୁଁ ରାଜ୍ୟଲାଭ କରିଅଛି ତାଙ୍କର ପରାମର୍ଶ ମତେ ରାଜ୍ୟର ପ୍ରଜାମାନଙ୍କୁ ଓ ବିଦେଶୀମାନଙ୍କୁ ଉତ୍ତମ ବ୍ୟବହାର ପ୍ରଦର୍ଶନ କରୁଛି ।

ସମ୍ବରଙ୍କ କଥା ଶୁଣି ସମସ୍ତେ ଭାରି ଖୁସି ହେଲେ । ସେମାନେ ସେଥି ସମୟରେ ସମ୍ବରଙ୍କ ଜୟ ଜୟ କାର କରି ନିଜ ନିଜ ଅଞ୍ଚଳକୁ ପ୍ରତ୍ୟାବର୍ତ୍ତନ କଲେ । ସିବା ପ୍ରଭୃତି ଜ୍ୟେଷ୍ଠ ଉପସ୍ଥିତ ଅନ୍ୟ ଅଠାନବେ ଭାଇଙ୍କ ତରଫରୁ ସମ୍ବରଙ୍କୁ ଆଶିର୍ବାଦ ଦେଇ କହିଲେ, ତୁ ଏହିପରି ଭାବରେ ଧର୍ମ ମାର୍ଗରେ ରହି ରାଜ୍ୟ ଶାସନ କରି ଯଶଲାଭ କର । ଆମେ ସମସ୍ତେ ତୁମକୁ ଯଥାଶକ୍ତି ସାହାଯ୍ୟ କରିବୁ ।

ବୋଧିସତ୍ତ୍ୱଙ୍କ ଶିଷ୍ୟ ସମ୍ବର ଏହିପରି ଭାବରେ ତାଙ୍କର ବଡଭାଇ-ମାନଙ୍କ ଆଦର, ଆଶିର୍ବାଦ ଓ ଗୁରୁଦେବଙ୍କ କୃପା ଲଭିକରି ବହୁଦିନଧରି ରାଜ୍ୟ ଶାସନ କରିଥିଲେ । ସେ ସମଗ୍ର ପୃଥିବୀରେ ଏକ ଶ୍ରେଷ୍ଠରାଜା ରୂପେ ଖ୍ୟାତିଲାଭ କରିଥିଲେ ।

---

# ଜଳପିଶାଚ ଓ ବୋଧିସତ୍ତ୍ୱ

ରାଜା ବ୍ରହ୍ମଦତ୍ତ କାଶୀ ରାଜ୍ୟରେ ରାଜୁତି କଲାବେଳେ ବୋଧିସତ୍ତ୍ୱ ତାଙ୍କର ପୁତ୍ରରୂପେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ନାମଥିଲା 'ମହୀଶାସକ' ।

ମହୀଶାସକଙ୍କ ପରେ ରାଣୀଙ୍କର ଆଉ ଏକ ପୁଅ ଜାତହେଲା । ତାର ନାମ ରଖାଗଲା 'ସୋମଦତ୍ତ' ।

ସୋମଦତ୍ତ ଜନ୍ମହେବାର ଦୁଇ ବର୍ଷ ପରେ ରାଣୀ ମୃତ୍ୟୁ ଲାଭକଲେ । ରାଜା ବ୍ରହ୍ମଦତ୍ତ ଦ୍ୱିତୀୟ ଥର ପାଇଁ ବିବାହ କଲେ । ବର୍ଷକ ପରେ ନୂଆ ରାଣୀଙ୍କ ଗର୍ଭରୁ ଏକ ପୁଅ ଜାତହେଲା । ଏହା ଶୁଣି ରାଜା ଖୁସିହୋଇ ରାଣୀଙ୍କୁ କହିଲେ, ତୁମ ଉପରେ ମୁଁ ପ୍ରସନ୍ନ ଅଛି । ବର ମାଗ । ପୂରଣ କରିବି । ରାଣୀ କହିଲେ, ବର ଦେବାକୁ ସମ୍ମତ ହୋଇଥିବାରୁ ଆପଣଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି । କିନ୍ତୁ ଆବଶ୍ୟକ ବେଳେ ପରେ ବର ମାଗି ନେବି । ରାଜା ଏଥିରେ ସମ୍ମତି ପ୍ରଦାନ କଲେ ।

ସାନ ରାଣୀଙ୍କ ପୁଅର ନାମ 'ଆଦିତ୍ୟ' ରଖାଗଲେ ।

ଆଦିତ୍ୟ କ୍ରମେ ବଡ଼ି ବଡ଼ହେଲା । ସେ ସବୁ ବିଦ୍ୟାରେ ପାରଙ୍ଗମ ହେଲା । ଦିନେ ସାନରାଣୀ ରାଜାଙ୍କୁ କହିଲେ, "ମହାରାଜ ! ଆଦିତ୍ୟର ଜନ୍ମ ବେଳେ ମୋତେ ଗୋଟିଏ ବର ଯାଚିଥିଲେ । ମୁଁ ସେତେବେଳେ ସେ ବର ନ ମାଗି ପଛକୁ ମାଗିନେବି ବୋଲି କହିଲି । ବର୍ତ୍ତମାନ ମୁଁ ବର ମାଗୁଛି । ଆପଣ ତାହା ପୂରଣ କରନ୍ତୁ ।"

ତୁମର ବର କ'ଣ କୁହ, ରାଜା ପ୍ରଶ୍ନ କଲେ ।

ସାନରାଣୀ କହିଲେ, 'ମୋ ପୁଅ ଆଦିତ୍ୟକୁ ଆପଣ ଯୁବରାଜରୂପେ ଅଭିଷେକ କରନ୍ତୁ ।'

ରାଣୀଙ୍କର ଏହର କଥା ଶୁଣି ରାଜା ବ୍ରହ୍ମଦତ୍ତ ଆଶ୍ଚର୍ଯ୍ୟ ହେଲେ । କହିଲେ "ମୋର ପ୍ରଥମ ପତ୍ନୀଙ୍କର ଦୁଇପୁଅ ଅଛନ୍ତି । ସେମାନେ ଥାଉ ଥାଉ ମୁଁ ଆଦିତ୍ୟଙ୍କୁ ଯୁବରାଜ କରିବି କପରି ?"

ତା'ପରେ ସାନରାଣୀ ମୁହଁ ଶୁଖାଇ ବସିଲେ । ରାଜାଙ୍କ ସାଙ୍ଗରେ ଦେଖା ହେଲେ, ସେ ବାରବାର ଆଦିତ୍ୟଙ୍କୁ ଯୁବରାଜ କରିବା କଥା କହିଲେ । ରାଜା ବ୍ରହ୍ମଦତ୍ତ ବୁଝିଲେ, ରାଣୀ ସହଜରେ ଛାଡ଼ିବା ପାତ୍ରୀ ନୁହଁନ୍ତି । ତାଙ୍କର ସନ୍ଦେହ ହେଲା ଯେ, ସାନ ରାଣୀ ସୁଯୋଗ ପାଇଲେ, ବଡ଼ ରାଣୀଙ୍କ ଦୁଇ ପୁଅଙ୍କୁ ବିଷଦେଇ ମାରିଦେଇ ପାରନ୍ତି । ତେଣୁ ସେ ଦୁଇ ପୁଅଙ୍କ ଜୀବନ ରକ୍ଷା ପାଇଁ ଦିନ ରାତି ଉପାୟ ଚିନ୍ତାକଲେ ।

ଦିନେ ସୁବିଧା ଦେଖି ରାଜା ତାଙ୍କର ବଡ଼ ପୁଅ ମହାଶାସନ ଓ ସୋମଦତ୍ତ ଉଭୟଙ୍କୁ ପାଖକୁ ଡାକି କହିଲେ, ତୁମେ ଦୁହେଁ କାଶୀ ଛାଡ଼ି ଅନ୍ୟ ଆଡ଼େ ଯାଅ । ମୋର ମୃତ୍ୟୁପରେ ତୁମେହିଁ ଏ ରାଜ୍ୟର ରାଜା ହେବ । ସେତେବେଳେ ଏଠାକୁ ଆସି ରାଜ୍ୟ ରକ୍ଷା କରିବ । ବର୍ତ୍ତମାନ ସାନ ରାଣୀଙ୍କ ପାଖରେ ରହିବା ଉଚିତ ନୁହେଁ ।

ପିତାଙ୍କ କଥା ମାନି ମହାଶାସନ ଓ ସୋମଦତ୍ତ କାଶୀ ରାଜ୍ୟ ଛାଡ଼ି ପଳାଇବାକୁ ବସିଲେ । ରାଜ୍ୟ ସୀମାରେ ପହଞ୍ଚି ଦେଖିଲେ, ସାନଭାଇ ଆଦିତ୍ୟ ମଧ୍ୟ ସେମାନଙ୍କ ପଛରେ ଆସୁଛି; ତିନିଜଣ ସାଙ୍ଗ ହୋଇ ଆଗକୁ ଚାଲିବାକୁ ଲାଗିଲେ ।

ତିନି ରାଜପୁତ୍ର ଅନେକ ବାଟ ଚାଲି ଚାଲି ଯାଇ ହିମାଳୟର ପାଦ ଦେଶରେ ପହଞ୍ଚିଲେ । ସେଠାରେ ଚତୁର୍ଦ୍ଦିଗ ଘନ ଜଙ୍ଗଲମୟ ଥିଲା । ବୁଲି ବୁଲି ପଥଶ୍ରାନ୍ତ ହୋଇ ଗୋଟିଏ ବୃକ୍ଷତଳେ ବସିଲେ । ଏହି ସମୟରେ ସେମାନଙ୍କୁ ଖୁବ ଶୋଷ ଲାଗିଥାଏ । ମହାଶାସନ ଆଦିତ୍ୟଙ୍କୁ

ଏକ ଜଳାଶୟ ଦେଖାଇ ଦେଇ କହିଲେ, ତୋତେ ମଧ୍ୟ ଶୋଷ ଲାଗୁଥିବ । ଉକ୍ତ ଜଳାଶୟକୁ ଯାଇ ପାଣି ପିଇବୁ ଓ ଆମ ପାଇଁ ମଧ୍ୟ ଜଳ ଆଣିବୁ ।

ଆଦିତ୍ୟ ଜଳାଶୟରେ ପ୍ରବେଶ କରିବା ମାତ୍ରକେ ଏକ ଜଳପିଶାଚ ଆସି ଆଦିତ୍ୟଙ୍କୁ ଉଠାଇ ନେଇଗଲା । ସେ ତାକୁ ନେଇ ତାର ପାତାଳ ପୁରରେ ରଖିଲା ।

ଆଦିତ୍ୟ ଜଳ ନେଇ ଫେରିବାର ବିଳମ୍ବ କରିବା ଦେଖି, ମହାଶାସନ ଚିନ୍ତିତ ହୋଇ ଭାଇ ସୋମଦତ୍ତଙ୍କୁ ଜଳାଶୟ ନିକଟକୁ ପଠାଇଲେ । ସେ ମଧ୍ୟ ଜଳ ପିଶାଚ ହାତରେ ଧରାପଡ଼ି ପାତାଳପୁରରେ ରହିଲେ ।

ମହାଶାସନ ଅନେକ ସମୟ ପର୍ଯ୍ୟନ୍ତ ଅପେକ୍ଷା କଲେ । କିନ୍ତୁ କେହି ହେଲେ ଜଳାଶୟରୁ ଫେରିଆସୁ ନଥିବା ଦେଖି, ସେ ନିଜେ ଯାଇ ଜଳାଶୟରେ ପହଞ୍ଚିଲେ । ସେ ହଠାତ୍ ଜଳାଶୟରେ ପ୍ରବେଶ ନ କରି, ଜଳାଶୟର ରାସ୍ତାଘାଟ ନିର୍ଣ୍ଣୟ କରିବାକୁ ଛିଡ଼ାହେଲେ ।

ଜଳପିଶାଚ ଛଦ୍ମ ବେଶରେ ଆସି ମହାଶାସନଙ୍କ ନିକଟରେ ପହଞ୍ଚିଲା । ପ୍ରଶ୍ନକଲା, ଏଇଠି ଛିଡ଼ାହୋଇ କ'ଣ ଦେଖୁଛ ? ଶୋଷ ହେଉଛି ଯଦି ପାଣିଭିତରେ ପଶୁନାହଁ ?

ଏପରି ପ୍ରଶ୍ନ ଶୁଣି ମହାଶାସନଙ୍କ ମନରେ ସନ୍ଦେହ ବଢ଼ିଗଲା । ସେ ଭାବିଲେ, ନିଶ୍ଚୟ ଏଥିରେ କିଛି ଗୋଳମାଳ ଅଛି । ସେ ସେହି ଛଦ୍ମବେଶୀ ଜଳପିଶାଚକୁ କହିଲେ, ତୁମ ଉପରେ ମୋର ସନ୍ଦେହ ହେଉଛି । ତୁମେ ମୋର ଦୁଇ ଭାଇଙ୍କୁ ନେଇ କେଉଁଠି ରଖିଛ କୁହ ।

ଛଦ୍ମବେଶୀ ଜଳ ପିଶାଚ ମହାଶାସନଙ୍କ ପ୍ରଶ୍ନ ଶୁଣି ଆଶ୍ଚର୍ଯ୍ୟ ହେଲା । କହିଲା— ତୁମେ ଖୁବ ଜ୍ଞାନୀ ମନେ ହେଉଛ । ତୁମ ଆଗରେ ସତକଥା ପ୍ରକାଶ କରିଛି । ଜ୍ଞାନୀ ଲୋକଙ୍କ ବ୍ୟତୀତ ଏ ଜଳାଶୟକୁ ଯିଏଆସେ, ମୁଁ

ସେମାନଙ୍କୁ ବନ୍ଦୀ କରିନଏ । କାରଣ ଏ ଜଳାଶୟ ହେଉଛି କୁବେରଙ୍କର । ମୁଁ ଏହାର ପ୍ରହରୀ ମାତ୍ର । ତାଙ୍କର ଆଦେଶରେ ମୁଁ କାର୍ଯ୍ୟ କରେ ।

ବୋଧିସତ୍ତ୍ୱ ରୂପୀ ମହାଶାସନ କହିଲେ, ହେ ପ୍ରହରୀ; ମୋର ମନେହୁଏ ତୁମେ ଜ୍ଞାନୀ ମାନଙ୍କଠାରୁ ଉପଦେଶ ପାଇବା ପାଇଁ ଅଭିଳାଷ ପୋଷଣ କରିଛ । ମୁଁ ତୁମକୁ ଜ୍ଞାନ-ଉପଦେଶ ଦେଇ ପାରିବି । ତେବେ ମୁଁ ବର୍ତ୍ତମାନ ଖୁବ କ୍ଳାନ୍ତ । ମୋର ବିଶ୍ରାମ ଆବଶ୍ୟକ ।

ଜଳପିଶାଚ ବୋଧିସତ୍ତ୍ୱଙ୍କୁ ସମ୍ମାନ ସହକାରେ ପାତାଳପୁରୀକୁ ନେଇଗଲା । ସେଠାରେ ତାଙ୍କର ସତ୍କାର କରି ପାଦତଳେ ବସି ଉପଦେଶ ଶୁଣିଲା ।

ମହାଶାସନ ନିଜ ଗୁରୁଙ୍କ ନିକଟରୁ ପାଇଥିବା ଜ୍ଞାନକୁ ଜଳପ୍ରହରୀ ନିକଟରେ ବ୍ୟାଖ୍ୟା କରି ଶୁଣାଇଲେ । ଜଳପିଶାଚ ଏହା ଶୁଣି ଖୁସିହୋଇ କହିଲା— ଆପଣଙ୍କଠାରୁ ଜ୍ଞାନ-ଉପଦେଶ ଶୁଣି ସୁଖୀ ହେଲି । ନେଣ୍ଟ ଆପଣଙ୍କ ଦୁଇଭାଇ ମଧ୍ୟରୁ ଜଣକୁହିଁ ମୁକ୍ତ ଦେବି । ଆପଣ କାହାକୁ ଫେରାଇ ନେବାକୁ ଚାହାଁନ୍ତି ପ୍ରକାଶ କରନ୍ତୁ ।

ମୁଁ ଆଦିତ୍ୟକୁ ଚାହୁଁଛି । ମହାଶାସନ ପ୍ରକାଶ କଲେ ।

ମହାଶାସନଙ୍କ କଥା ଶୁଣି ଜଳପ୍ରହରୀ ଆଶ୍ଚର୍ଯ୍ୟ ହେଲା । କାରଣ ସେ ନିଜ ଭାଇର ମୁକ୍ତ କାମନା ନ କରି, ସାବତ ଭାଇର ମୁକ୍ତକାମନା କରିଥିଲେ । ପ୍ରକାଶ୍ୟରେ କହିଲା, ନିଜ ଭାଇକୁ ଛାଡ଼ି ସାବତ ଭାଇକୁ ରକ୍ଷା କରିବା କ'ଣ ଧର୍ମ ସଙ୍ଗତ ?

ବୋଧିସତ୍ତ୍ୱ କହିଲେ, ଏଥିରେ ଅଧର୍ମ କିଛି ନାହିଁ । ମୋ ମା'ର ସନ୍ତାନ ଦୁଇଟିଙ୍କ ମଧ୍ୟରୁ ମୁଁ ଜୀବିତ ଅଛି । ମୋର ସାବତ ମାଙ୍କର ଗୋଟିଏ ପୁଅତ ରହିବା ଉଚିତ ? ସେ ଏହି ଆଦିତ୍ୟ ପାଇଁ ଆମ ପିତାଙ୍କ

ପାଖରୁ ରାଜ୍ୟ ମଧ୍ୟ ମାଗି ନେବାକୁ ଚାହିଁଥିଲେ । ଆମେ ପିତାଙ୍କ ପରାମର୍ଶରେ ରାଜ୍ୟ ଛାଡ଼ି ଏଠାକୁ ଆସିଲୁ । ଭ୍ରାତୃ ସ୍ନେହରେ ବଶ ହୋଇ ସାନଭାଇ ଅ.ଦିତ୍ୟ ମଧ୍ୟ ଆମର ଅନୁଗମନ କଲା । ଏବେ ଆମେ ଦୁଇଭାଇ ରାଜ୍ୟକୁ ଫେରିଗଲେ ଲୋକେ 'କ'ଣ କହିବେ ?

ଏହା ଶୁଣି ଜଳପ୍ରହରୀ ବୋଧିସତ୍ତ୍ୱଙ୍କର ପାଦ ତଳେ ପଡ଼ି କହିଲା, ଆପଣଙ୍କ ପରି ମହାନ୍ ଜ୍ଞାନୀ ମୁଁ ଜୀବନରେ ଦେଖିନାହିଁ । ଆପଣଙ୍କ ଦୁଇ ଭାଇଙ୍କୁ ଫେରାଇ ଦେଉଛି । ଯେତେଦିନ ପର୍ଯ୍ୟନ୍ତ ଏଠାରେ ରହିବେ, ସେତେଦିନ ପର୍ଯ୍ୟନ୍ତ ମୋର ଅତିଥି ହେବେ ।

ଏହାପରେ ତିନିଭାଇଯାକ ଏକାଠି ବହୁଦିନ ପର୍ଯ୍ୟନ୍ତ ଜଳପ୍ରହରୀର ଅତିଥି ହୋଇ ରହିଲେ । ପିତାଙ୍କ ମୃତ୍ୟୁପରେ ସେମାନେ କାଶୀକୁ ଫେରି ଆସିଲେ ।

କାଶୀ ରାଜ୍ୟରେ ମହାଶାସନଙ୍କ ଅଭିଷେକ ହେଲା । ସୋମଦତ୍ତ ଓ ଆଦିତ୍ୟ ଯଥାକ୍ରମେ ମନ୍ତ୍ରୀ ଓ ସେନାପତି ହୋଇ ପାଖରେ ରହିଲେ । ଜଳପିଶାଚକୁ ଘରଦ୍ୱାର ଦେଇ ଭଲରେ ରଖିଲେ ।



# ସାଧ୍ୱୀ ସୁଜାତା

ରାଜା ବ୍ରହ୍ମଦତ୍ତ କାଶୀ ରାଜ୍ୟରେ ରାଜତ୍ୱ କଲାବେଳେ ବୋଧିସତ୍ତ୍ୱ କାଶୀ ନିକଟସ୍ଥ ଏକ ଗ୍ରାମରେ ଜଣେ ଧନୀଲୋକଙ୍କ ପୁତ୍ରରୂପେ ଜନ୍ମ ଗ୍ରହଣ କରିଥିଲେ । ସେ ବାଲ୍ୟକାଳରୁ ଉପଯୁକ୍ତ ଶିକ୍ଷାଲାଭ କରି ଯୁବକ ଅବସ୍ଥାରେ ସବୁ ବିଦ୍ୟାରେ ପାରଙ୍ଗମ ହୋଇ ଉଠିଲେ ।

ବୋଧିସତ୍ତ୍ୱ ଯୁବକ ହେବାରୁ ତାଙ୍କ ପିତା ତାଙ୍କୁ ସୁଜାତା ନାମ୍ନୀ ଏକ ରୂପବତୀ ଓ ଗୁଣବତୀ କନ୍ୟା ସହିତ ବିବାହ କରାଇ ଦେଲେ । ସୁଜାତା ଶାଶୁ

ଶ୍ୱଶୁର ଓ ସ୍ୱାମୀଙ୍କୁ ଅତି ଶ୍ରଦ୍ଧା ଓ ଭକ୍ତିରେ ସହିତ ସେବା କରିବାକୁ ଲାଗିଲେ । ସୁଜାତାଙ୍କ ସଦ୍‌ଗୁଣ ଦେଖି ବୋଧିସତ୍ତ୍ୱ ତାଙ୍କ ଉପରେ ଖୁବ ସନ୍ତୁଷ୍ଟ ଥିଲେ ।

ବିବାହର ବହୁଦିନ ପରେ ସୁଜାତା ଏକାନ୍ତରେ ଦିନେ ସ୍ୱାମୀଙ୍କୁ କହିଲେ, ମୋର ପିତାମାତା ଏବେ ବୃଦ୍ଧାବସ୍ଥା ଭୋଗୁଛନ୍ତି । ସେମାନଙ୍କୁ ଥରେ ଯାଇ ଦେଖି ଆସିବାକୁ ଇଚ୍ଛା ହେଉଛି । ଚାଲ ଦୁହେଁ ମିଶି ଆମ ଘରକୁ ଯିବା । କିଛିଦିନ କଟାଇ ଫେରି ଆସିବା ।

ସୁଜାତାଙ୍କର କଥା ଶୁଣି ବୋଧିସତ୍ତ୍ୱ ଖୁବ ଖୁସି ହେଲେ । କହିଲେ, ଉତ୍ତମ ପ୍ରସ୍ତାବ । ଚାଲ ଦୁହେଁ ମିଶି ତୁମ ଘରକୁ ଯିବା ଓ ତୁମର ବାପା ମାଙ୍କୁ ଦେଖି ଆସିବା । ମୋର ମଧ୍ୟ ସେମାନଙ୍କୁ ଦେଖି ଆସିବା ପାଇଁ ବହୁତ ଇଚ୍ଛା ।

ସୁଜାତା ଓ ବୋଧିସତ୍ତ୍ୱ ବଳଦ ଗାଡ଼ିରେ ବସି ସୁଜାତାଙ୍କ ବାପ ଘରକୁ ଯାତ୍ରାକଲେ । ଗାଡ଼ିରେ ଜିନିଷ ପତ୍ର ଲଦା ହେଲା ଓ ସୁଜାତା ମଧ୍ୟ ବସିଲେ । ସ୍ୱାମୀ ବୋଧିସତ୍ତ୍ୱ ଗାଡ଼ି ଚଳାଇଲେ ।

ସେମାନେ କାଶୀନଗରର ସୀମାରେ ପହଞ୍ଚି ଗୋଟିଏ ଗଛମୂଳେ ଶଗଡ଼ ରଖିଲେ । ସେଇଠି ବଳଦ ମାନଙ୍କୁ ଫିଟାଇ ବିଶ୍ରାମ ଦେଲେ । ନିକଟରେ ଏକ ଜଳାଶୟ ଦେଖି ସେମାନେ ଯାଇ ହାତଗୋଡ଼ ଧୋଇଲେ ଓ ଖିଆ ପିଆ କଲେ । କିଛି ସମୟ ବିଶ୍ରାମ ନେବା ପରେ ଶଗଡ଼ରେ ବସି ପୁଣି ଚାଲିଲେ ।

ସେମାନେ କାଶୀନଗର ଭିତର ଦେଇ ଶଗଡ଼ ନେଉଛନ୍ତି, ଶୁଣିଲେ କାଶୀର ରାଜା ହାତୀ ଉପରେ ବସି ଦଳବଳ ସହ ନଗର ବୁଲୁଛନ୍ତି ।

ସୁଜାତାଙ୍କର ଇଚ୍ଛା ଥିଲା-କାଶୀରାଜାଙ୍କୁ ଦେଖିବେ । ତେଣୁ ସେ ବୋଧିସତ୍ତ୍ୱଙ୍କୁ ଶଗଡ଼ରୁ ଓହ୍ଲାଇ ଚାଲି ଚାଲି ଯିବାକୁ ଅନୁରୋଧ କଲେ ।

ବୋଧିସତ୍ତ୍ୱ ପ୍ରଥମେ ବାରଣ କଲେ ମଧ୍ୟ, ଶେଷରେ ସୁଜାତାଙ୍କ ପ୍ରସ୍ତାବରେ ରାଜି ହୋଇ ଚାଲିବାକୁ ଆରମ୍ଭ କଲେ' । ସ୍ୱାମି ସ୍ତ୍ରୀ ଉଭୟେ ଗାଡ଼ି ସଙ୍ଗରେ ଚାଲିବାକୁ ଲାଗିଲେ ।

ସେମାନେ ଦେଖିଲେ, ରାଜା-ରାଣୀ ଉପରେ ବସି ଯାଉଛନ୍ତି । ଠିକ ସେତିକି ବେଳେ ରାଜାଙ୍କ ଆଖି ସୁଜାତା ଉପରେ ପଡ଼ିଲା । ସୁନ୍ଦରୀ ସୁଜାତାଙ୍କୁ ଯେ କୌଣସି ଉପାୟରେ ସେ ବିବାହ କରିବାକୁ ଇଚ୍ଛା କଲେ । ସୁଜାତାର ସମ୍ପୂର୍ଣ୍ଣ ପରିଚୟ ବୁଝିନେଇ ସେ ଏକ ଉପାୟ ସ୍ଥିରକଲେ । ତାଙ୍କର ଏକ ବିଶ୍ୱସ୍ତ ଭୃତ୍ୟକୁ ଡାକି କହିଲେ, ତୁ ଯାଇ ରାଜ ମୁକୁଟକୁ ଅତି ଗୋପନରେ ଶଗଡ଼ ଭିତରେ ରଖି ଦେଇ ଆ ।

ଭୃତ୍ୟଟି ରାଜମୁକୁଟ ନେଇ ଖାଲି ଶଗଡ଼ରେ ରଖିଦେଇ ଆସିଲା । କିଛି ସମୟ ପରେ ହଠାତ୍ ରାଜାଙ୍କ ପାଖ ଲୋକମାନେ ହୁରି ପକାଇଲେ, ରାଜ ମୁକୁଟ ଚୋରି ହୋଇ ଯାଇଛି ।

ରାଜାଙ୍କ ସିପାହୀ ମାନେ ଅନେକ ଖୋଜା ଖୋଜି ପରେ ବୋଧିସତ୍ତ୍ୱଙ୍କ ଶଗଡ଼ ଭିତରୁ ରାଜମୁକୁଟ ପାଇଲେ । ସେମାନେ ବୋଧିସତ୍ତ୍ୱଙ୍କୁ ଚୋର ମନେକରି ଭିଡ଼ି ଭିଡ଼ି ଆଣି ରାଜାଙ୍କ ଆଗରେ ହାଜର କଲେ । ବୋଧିସତ୍ତ୍ୱ ପ୍ରତିବାଦ କରିବାର ସୁଯୋଗ ପାଇଲେ ନାହିଁ ।

ରାଜା ମନେ ମନେ ଖୁସି ହୋଇ ଭାବିଲେ, ତାଙ୍କ ଯୋଜନା ସଫଳ ହୋଇଛି । ଏଣିକି ସୁଜାତାର ସ୍ୱାମୀଙ୍କୁ ହତ୍ୟା କରାଯାଇ ସୁନ୍ଦରୀକୁ ରାଣୀ କରି ହେବ । ସେ କ୍ରୁଦ୍ଧ କଣ୍ଠରେ କହିଲେ, ଚୋରର ମସ୍ତକ ଛେଦନ କର ।

ରାଜାଙ୍କ କର୍ମଚାରୀମାନେ ଚୋର ସାବ୍ୟସ୍ତ ହୋଇଥିବା ବୋଧିସତ୍ତ୍ୱଙ୍କୁ ଅକାରଣରେ ମାଡ଼ ମାରି ମାରି ରାଜପଥ ଉପରେ ଚଲାଇ ଚଲାଇ ନେଲେ । ସେମାନେ ତାଙ୍କୁ ବଧ-ଭୂମିକୁ ନେଇଗଲେ ।

ସୁନ୍ଦରୀ ସୁଜାତା କିଛି ବୁଝି ନପାରି ସ୍ୱାମୀଙ୍କ ପଛେ ପଛେ କାନ୍ଦି କାନ୍ଦି ଚାଲିଥାନ୍ତି । ସେ ନିଜ ଭାଗ୍ୟକୁହିଁ ନିନ୍ଦୁଥାନ୍ତି । ବଧ ସ୍ଥଳରେ ପହଞ୍ଚି ଭଗବାନଙ୍କୁ ହାତ ଯୋଡ଼ି ଜଣାଇଲେ, ଏକ ବଗ୍ଟର ଭଗବାନ ? ଏକ ସରଳ ଲୋକକୁ ବୃଥାରେ କଣ ମୃତ୍ୟୁ ଦଣ୍ଡ ମିଳିବ ? ତୁମେ କଣ ଏହାର ପ୍ରତିକାର କରିପାରିବ ନାହିଁ ?

ସାଧ୍ୱୀ ସୁଜାତାଙ୍କର ପ୍ରାର୍ଥନା ଶୁଣି ଇନ୍ଦ୍ରଙ୍କ ଆସନ ଟଳମଳ ହେଲା । ସେ ଦିବ୍ୟ ଦୃଷ୍ଟିରେ ଦେଖିଲେ, ଏକ ନିରପରାଧ ବ୍ୟକ୍ତିଙ୍କୁ ରାଜା ମୃତ୍ୟୁ ଦଣ୍ଡ ଦେଉଛନ୍ତି । ତେଣୁ ସେ ଏହାର ପ୍ରତିକାର କରିବାକୁ ଚାହିଁଲେ । ତାଙ୍କ ଇଚ୍ଛାରେ ରାଜା ଓ ବୋଧିସତ୍ତ୍ୱଙ୍କର ଆସନରେ ଅଦଳ ବଦଳ ହେଲା । ରାଜାଙ୍କ ଦେହରେ ବୋଧିସତ୍ତ୍ୱଙ୍କ ପୋଷାକ ଓ ବୋଧିସତ୍ତ୍ୱଙ୍କ ଦେହରେ ରାଜାଙ୍କ ପୋଷାକ ଖଞ୍ଜି ହୋଇଗଲା । ଏସବୁ କାଣ୍ଡ ସମସ୍ତଙ୍କର ଅଲକ୍ଷରେ ଗୋପନରେ ସଂପାଦିତ ହେଲା ।

ହତ୍ୟାକାରୀମାନେ ରାଜାଙ୍କୁ ବୋଧିସତ୍ତ୍ୱ ମନେକରି ହତ୍ୟାକଲେ । କିନ୍ତୁ ରାଜାଙ୍କୁ ହତ୍ୟା କରିବା ପରେ ତାଙ୍କ ମୃତଦେହ ଦେଖି ସବୁ କଥା ଜଣା ପଡ଼ିଗଲା । ସମବେତ ଜନତା ଏହା ଦେଖି ଆଶ୍ଚର୍ଯ୍ୟ ହେଲେ । କିପରି କଣ ଘଟିଗଲା, ଏହା ଜାଣିବା ପାଇଁ ସମସ୍ତେ ଉଦ୍‌ଗ୍ରୀବ ହୋଇ ପଡ଼ିଲେ ।

ଠିକ୍ ଏତିକିବେଳେ ଦେବରାଜ ଇନ୍ଦ୍ର ସମସ୍ତଙ୍କୁ ଦର୍ଶନ ଦେଇ କହିଲେ, ଦୁଷ୍ଟ ରାଜାର ପାପମାତ୍ରା ଏତେ ବଢି ଯାଇଥିଲା ଯେ, ତା' ପାଇଁ ଏପରି ପରିଣତି ଅନିବାର୍ଯ୍ୟ ମନେହେଲା । ଆଜିଠାରୁ ବୋଧିସତ୍ତ୍ୱ କାଶୀ ରାଜ୍ୟର ରାଜାହେଲେ । ସୁଜାତା ତାଙ୍କର ପାଟରାଣୀ । ଏହା କହି ଇନ୍ଦ୍ର ଅଦୃଶ୍ୟ ହୋଇଗଲେ ।

ଇନ୍ଦ୍ରଙ୍କ ଆଦେଶ ଅନୁସାରେ ପ୍ରଜାମାନେ ବୋଧିସତ୍ତ୍ୱ ଓ ସୁଜାତାଙ୍କୁ ସିଂହାସନରେ ବସାଇ ଅଭିଷେକ କଲେ ।

ବୋଧିସତ୍ତ୍ୱ ରାଜା ହେବାପରେ କାଶୀରାଜ୍ୟ ଧର୍ମରେ ଚାଲିଲା । ପ୍ରଜାମାନେ ଧର୍ମାଚରଣ କରିବାକୁ ଲାଗିଲେ । ଆକାଶରେ ଠିକ୍ ସମୟରେ ବର୍ଷା ହେଲା । ରାଜ୍ୟରେ ଦୁଃଖୀ ହୋଇ କେହି ରହିଲେ ନାହିଁ । ସମସ୍ତେ ଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ ।

ବୋଧିସତ୍ତ୍ୱ ପ୍ରଜାମାନଙ୍କୁ ଧର୍ମୋପଦେଶ ଦେଇ କହିଲେ, ପାପର ପ୍ରତିଫଳ ଅଛି । ଏ ଜନ୍ମରେ ନ ହେଲେ ମଧ୍ୟ ପରଜନ୍ମରେ ପାପୀ ତା' ପାପର ଶାସ୍ତି ଭୋଗ କରେ । ପ୍ରକାଶ୍ୟ ଶାସ୍ତି ନ ପାଇଲେ ମଧ୍ୟ ମାନସିକ ଯାତନା ଭୋଗ କରେ । ତେଣୁ ସମସ୍ତେ ପୁଣ୍ୟକାମ କରି ଧର୍ମ ଅର୍ଜ୍ଜନ କରିବା ଉଚିତ ।



# ମାତୃରଣ

ରାଜା ବ୍ରହ୍ମଦତ୍ତ କାଶୀରେ ରାଜୁତି କଲାବେଳେ, ବୋଧିସତ୍ତ୍ୱ ଏକ ଶ୍ୟାମଳ ବର୍ଣ୍ଣର ବାଛୁରୀ ରୂପରେ ଜନ୍ମ ଗ୍ରହଣ କରିଥିଲେ ।

ଶ୍ୟାମଳ ବର୍ଣ୍ଣର ବାଛୁରୀଟି ଦେଖିବାକୁ ଖୁବ ସୁନ୍ଦର ହୋଇଥାଏ । ଚାଲିଯାଉଥିବା ଲୋକର ଆଖି ସେହି ବାଛୁରୀ ଉପରେ ଲାଖି ରହିଥାଏ । ସମସ୍ତେ ତାକୁ ଦେଖି ଖୁସି ହେଉଥାନ୍ତି ।

ବାଛୁରୀ ଯେଉଁ ଘରେ ଥାଏ, ତାର ମାଲିକଙ୍କୁ ଗାଁ ଛାଡ଼ି ଚାଲିଯିବାକୁ ପଡ଼ିଲା । ସେ ଜଣେ ବୃଦ୍ଧାଙ୍କ ଠାରୁ କିଛି କରଜ ନେଇଥାନ୍ତି । ତେଣୁ ଗାଁ ଛାଡ଼ି ଚାଲି ଗଲାବେଳେ ସେହି କରଜ ବାବଦକୁ ଶ୍ୟାମଳ ବର୍ଣ୍ଣର ବାଛୁରୀକୁ ଦେଇଗଲେ ।

ବୁଢା ଶ୍ୟାମଳ ବର୍ଣ୍ଣର ବାଛୁରୀକୁ ପାଇ ଖୁବ ଖୁସିହେଲେ । ସେ ତାକୁ ପୁତ୍ରପରି ପାଳନ କରିବାକୁ ଲାଗିଲେ । ବାଛୁରୀ ମଧ୍ୟ ଉକ୍ତ ବୁଢାଙ୍କୁ ଆଦରିଗଲା । ସେ ତାଙ୍କୁ ମାଆ ପରି ଭଲ ପାଇଲା ।

ଉକ୍ତ ଶ୍ୟାମଳ ବର୍ଣ୍ଣର ବାଛୁରୀ ବୁଢାଙ୍କର ଆଦର ଯତ୍ନ ପାଇ କ୍ରମେ ବଢିବାକୁ ଲାଗିଲା । ବୁଢା ତାକୁ ଖୁବ ବିଶ୍ୱାସ କରୁଥାନ୍ତି । ସେ ତାକୁ ପଘାରେ ବାନ୍ଧନ୍ତି ନାହିଁ । ସେ ନିଜ ଇଚ୍ଛାରେ ଚରି ବୁଲି ଠିକ୍ ସମୟରେ ଘରକୁ ଫେରୁଥାଏ । ଗାଁର ପିଲମାନେ ମଧ୍ୟ ସେହି ବାଛୁରୀକୁ ଖୁବ୍ ଭଲ ପାଉଥାନ୍ତି । ତାକୁ ହଇରାଣ ହରକତ ନ କରି ତା' ସଙ୍ଗରେ ଖେଳୁଥାନ୍ତି ।

ବାଛୁରୀ କ୍ରମେ ବଡ଼ ହୋଇ ଭାବିଲା, ମୋର ପାଳକ ମୋତେ ପୁତ୍ର ପରି ସ୍ନେହ କରି ବଢ଼ାଉଛନ୍ତି । ମୋତେ ଖାଇବାକୁ ନଦେଇ ନିଜେ ଖାଉ ନାହାନ୍ତି । କିନ୍ତୁ ବିଚାରୀ ଖୁବ ଗରିବ । ତାଙ୍କୁ ଯେ କୌଣସିମତେ ସାହାଯ୍ୟ କରି ପାରିଲେ ଭଲ ହୁଅନ୍ତା । ମନେ ମନେ ଏପରି ଚିନ୍ତାକରି ବାଛୁରୀଟି ସୁଯୋଗ ଅପେକ୍ଷାରେ ରହିଲା । କ୍ରମେ ସେ ବଳଦରେ ପରିଣତ ହେଲା ।

ଗାଁର ଓ ଆଖ ପାଖର ବହୁଲୋକ ସେହି ଶ୍ୟାମଳ ବର୍ଣ୍ଣର ବଳଦକୁ ଦେଖି ଖୁସି ହୋଇ ତାକୁ କିଣି ନେବାକୁ ବାହାରିଲେ । କିନ୍ତୁ ବୁଢା ତାକୁ ବିକ୍ରୟ କରିବାକୁ ମନା କରିଦେଲେ ।

ଥରେ ଜଣେ ବିଶିଷ୍ଟ ବଣିକ ତାଙ୍କର ପାଞ୍ଚଶହ ଶଗଡ଼ ନେଇ ସେହି ଗାଁ ପାଖ ରାସ୍ତାରେ ଯାଉଥାନ୍ତି । ଶଗଡ଼ରେ ଜିନିଷପତ୍ର ଭର୍ତ୍ତି ହୋଇଥାଏ । ଗାଁ ମୁଣ୍ଡରେ ନଈଟିଏ ଥାଏ । ସେହି ନଈ ପାରିକରି ନେବା ପାଇଁ ଯୋଚି ହୋଇଥିବା ବଳଦମାନଙ୍କର ବଳ ପାଉନଥାଏ । ଏହା ଦେଖି ବଣିକ ମହା ଅସୁବିଧାରେ ପଡ଼ିଲେ । ସେ ଗାଁ ଭିତରକୁ ଯାଇ କେତେକ ବଳୁଆ ବଳଦ ସଂଗ୍ରହ କରିବାକୁ ସ୍ଥିର କଲେ । କିନ୍ତୁ ନଈ ରାସ୍ତା ପାରି କରିବା ଭଳି ବଳୁଆ ବଳଦ ସେହି ଗାଁରେ ମିଳିଲେ ନାହିଁ ।

ବଣିକ ହତାଶରେ ମୁହଁ ଶୁଖାଇ ବସିଥାନ୍ତି; ଠିକ ଏତିକବେଳେ ସେ ସେହି ଶ୍ୟାମଳ ବର୍ଣ୍ଣର ବଳଦକୁ ଦେଖିଲେ । ସେହି ବଳଦ ତାଙ୍କ ଶଗଡ଼ ଉଠାଇବାରେ ସମର୍ଥ ହେବ : ତେଣୁ ସେ ବଳଦର ମାଲିକକୁ ଖୋଜିବାକୁ ଲାଗିଲେ ।

ପାଖରେ ଏକ ଗଉଡ଼ ପିଲା ଥିଲା । ସେହି ବଳଦ ସମ୍ପର୍କରେ ପ୍ରଶ୍ନ କରିବାରୁ କହିଲା, ତାର ମାଲିକ ହେଉଛନ୍ତି ଜଣେ ବୁଢ଼ୀ । ସେ କୌଣସି ଏକ କାମରେ ଗାଁ ବାହାରକୁ ଯାଇଛନ୍ତି । ମୋତେ ସେହି ବଳଦ ଦାୟିତ୍ୱ ଦେଇ ଯାଇଛନ୍ତି ।

ବଣିକ ତାଙ୍କର ଅସୁବିଧା କଥା ଜଣାଇ, ବଳଦର ସାହାଯ୍ୟ ଚାହିଁଲେ ।

ଗଉଡ଼ପିଲା କହିଲା, ହଁ ଏ ବଳଦଟି ଆପଣଙ୍କର କାମରେ ଆସିପାରେ । ଆପଣ ଚେଷ୍ଟା କରିପାରନ୍ତି ।

ବଣିକ ସେହି ଶ୍ୟାମଳ ବର୍ଣ୍ଣର ବଳଦ ବେକରେ ଦଉଡ଼ି ବାନ୍ଧି ତାକୁ ଶଗଡ଼ ପାଖକୁ ନେବା ପାଇଁ ଅନେକ ଚେଷ୍ଟା କଲେ । ବଳଦ କିନ୍ତୁ ପାଦେ ହେଲେ ଘୁଞ୍ଚିଲା ନାହିଁ । ଏହା ଦେଖି ବଣିକ ତା'ର କାନ ପାଖରେ କହିଲେ, ମୋ କାମ କରିଦେଲେ ତୋତେ ଯଥେଷ୍ଟ ପରିମାଣରେ ଖାଇବାକୁ ଦେବି । ଟିକିଏ ସାହାଯ୍ୟ କର ।

କିନ୍ତୁ ବଳଦ ମୁଣ୍ଡ ହଲାଇ ମନା କରିଦେଲା । ଯେତେ ଯାହା ଚେଷ୍ଟା କଲେ ମଧ୍ୟ ସେ ଘୁଞ୍ଚିଲା ନାହିଁ ।

ବଣିକ ପୁଣିଥରେ ବଳଦର କାନ ପାଖରେ କହିଲେ, ତୁମେ ଯଦି ମୋର ପାଞ୍ଚଶହଟି ଶଗଡ଼ ନଈକୂଳକୁ ନେଇଯିବୁ, ତେବେ ପ୍ରତି ଶଗଡ଼ ପିଛା ଦୁଇଟଙ୍କା ହିସାବରେ ହଜାରେ ଟଙ୍କା ଦେବି, ଏଥର ଭଲ ଆ !

ଆଶ୍ଚର୍ଯ୍ୟର କଥା, ଏହାପରେ ବଳଦଟି ଆପେ ଆପେ ଶଗଡ଼ ପାଖକୁ ଆସି ଜୁଆଳି ପାଖରେ ଠିଆ ହେଲା ।

ବଣିକ ଉକ୍ତ ଶ୍ୟାମଳ ବର୍ଣ୍ଣର ବଳଦ ସାହାଯ୍ୟରେ ତାଙ୍କର ପାଞ୍ଚଶହ ଶଗଡ଼ ନଈ କୂଳକୁ ନେଇଗଲେ ।

ବଣିକ ଏହାପରେ ସ୍ୱସ୍ତିର ନିଶ୍ୱାସ ଛାଡ଼ିଲେ । ମନେ ମନେ କହିଲେ, ଧନ୍ୟ ଏ ବଳଦ ! ମୋତେ ମହା ଶଙ୍କଟରୁ ପାରିକଲା । ଏହାପରେ ସେ ବଳଦ ବେକରେ ପାଞ୍ଚଶହ ଟଙ୍କାର ଏକଥଳି ବାନ୍ଧି କହିଲେ, ଏଇ ତୋର ପୁରସ୍କାର ।

ବଳଦ ଜାଣିଲା, ବଣିକ ତାର ପ୍ରତିଶ୍ରୁତି ପାଳନ କରି ନାହିଁ । ହଜାରେ ଟଙ୍କା ପରିବର୍ତ୍ତେ ସେ ମାତ୍ର ପାଞ୍ଚଶହ ଟଙ୍କା ଦେଇଛି । ସେ ସଙ୍ଗେ ସଙ୍ଗେ ଶଗଡ଼ ଆଗରେ ଛିଡ଼ା ହୋଇ ପଥରୋଧ କଲା । ଯେତେ ଯାହା କଲେ ମଧ୍ୟ ବାଟରୁ ଆଡ଼େଇ ହେଲା ନାହିଁ ।

ବଣିକ ବୁଝିଲେ, ଶ୍ୟାମଳ ବର୍ଣ୍ଣର ବଳଦ ତାଙ୍କ ଭୁଲ ଧରି ଦେଇଛି । ସେ ନିଜ କଥାରେ ତ୍ରୁଟି କରିଥିବା ହେତୁ, ବଳଦ ବାଟ ଛାଡୁନାହିଁ । ସେ ମନେ ମନେ ଲଜ୍ଜିତ ହେଲେ । ଆଉ ଏକ ଥଳିରେ ଆଉ ପାଞ୍ଚଶହ ଟଙ୍କା ପୁରାଇ ସେ ବଳଦ ବେକରେ ବାନ୍ଧିଦେଲେ ଏବଂ କହିଲେ—ଏଥର ମୋର ପ୍ରତିଶ୍ରୁତି ପାଳନ କଲି । ବାଟଛାଡ଼ ।

ବଳଦଟି ସଙ୍ଗେ ସଙ୍ଗେ ବାଟ ଛାଡ଼ି ଛିଡ଼ାହେଲା ।

ଏହାପରେ ଗୋଟିକ ପରେ ଗୋଟିଏ ହୋଇ ପାଞ୍ଚଶହ ଶଗଡ଼ ଚାଲିଗଲେ ।

ବଳଦଟି ଟଙ୍କାଥଳି ନେଇ ପାଳିକା ବୃଦ୍ଧା ନିକଟକୁ ଫେରିଆସିଲା । ବଳଦଟି ଅନେକ ପରିଶ୍ରମ କରିଥିବା ହେତୁ ତାର ଦେହ ଧୂସର ଦେଖା ଯାଉଥିଲା । ବୃଦ୍ଧ ତା ଦେହକୁ ପୋଛି ଦେଲା ବେଳେ ହଜାର ଟଙ୍କାର

ଥିଲା ଦେଖିବାକୁ ପାଇଲେ । ତାଙ୍କର ବିସ୍ମୟର ସୀମା ରହିଲାନାହିଁ ।

ଠିକ ଏତିକିବେଳେ ବଳଦ ଦାଉଁଳି ଭିତରେ ଥିବା ଗଉଡ଼ ପିଲାଟି ବୁଢ଼ାଙ୍କ ନିକଟରେ ପହଞ୍ଚି ସେ ଦିନର ସମସ୍ତ ଘଟଣା ବର୍ଣ୍ଣନା କଲା । ଏହା ଶୁଣି ବୁଢ଼ାଙ୍କ ଆଖିରେ ଆନନ୍ଦର ଲୁହ ଭରିଗଲା । ସେ ସ୍ନେହରେ ବଳଦକୁ ଆଉଁସି ଆଉଁସି କହିଲେ, ମୋ ପୁଅର କେତେ ବୁଦ୍ଧି । କେତେ ଅକଳରେ ଟଙ୍କା ରୋଜଗାର କରିଛି ।

ବୁଢ଼ା ଶେଷ ଜୀବନ ସୁଖରେ ବିତେଇଲେ । ବଳଦ ଜନ୍ମ ନେଇଥିବା ବୋଧିସତ୍ତ୍ୱ ଏହିପରି ଭାବରେ ପାଳିକା ମାତାର ଋଣ ପରିଶୋଧ କରିଥିଲେ ।

---

# ଶ୍ୱେତହସ୍ତୀ

ପ୍ରାଚୀନ କାଳର କଥା—

ସେତେବେଳେ ମଗଧ ଦେଶର ରାଜା ବିରୂପସେନ ରାଜୁତି କରୁଥିଲେ । ସେହି ସମୟରେ ବୋଧିସତ୍ତ୍ୱ ଏକ ଶ୍ୱେତହସ୍ତୀ ରୂପେ ଜନ୍ମ ଗ୍ରହଣ କରି ରାଜା ବିରୂପସେନଙ୍କ ପାଟହସ୍ତୀ ଥିଲେ ।

ଥରେ ଏକ ପର୍ବଦିନ ପଡ଼ିଲା । ରାଜା ବିରୂପସେନ ପାଟହାତୀ ଉପରେ ବସି ନଗର ପରିକ୍ରମା କଲେ । ତେଣୁ ପାଟହାତୀକୁ ଖୁବ ସୁନ୍ଦର ରୂପରେ ସଜାଇ ଦିଆଗଲା । ସେ ଶୋଭାଯାତ୍ରାର ଅନ୍ୟତମ ଆକର୍ଷଣ ହେଲା । ଲୋକେ ହାତୀକୁ ଦେଖି ଖୁବ ପ୍ରଶଂସା କଲେ । ତାର ଧୀର ମନ୍ଥର ଚାଲି ଓ ସାଜସଜ୍ଜାକୁ ଲୋକେ ମୁଗ୍ଧ ଭାବରେ ଚାହିଁ ରହିଲେ ।

ରାଜା ଦେଖିଲେ, ରାଜ୍ୟର ସମସ୍ତେ ସେହି ଶ୍ୱେତହସ୍ତୀର ପ୍ରଶଂସାରେ ଶତମୁଖ ପାଲଟି ଯାଉଛନ୍ତି । ତାଙ୍କର ପ୍ରଶଂସା କେହି କରୁନାହାଁନ୍ତି । ତେଣୁ ସେ ହାତୀ ଉପରେ ଭୀଷଣ ରାଗିଗଲେ । ତାକୁ ବିନାଶ କରିବା ପାଇଁ ସ୍ଥିର କରି, ମନେ ମନେ ବିନାଶ ଉପାୟ ଖୋଜିବାକୁ ଲାଗିଲେ ।

ପରଦିନ ରାଜା ବିରୂପସେନ ମାହୁନ୍ତକୁ ଡାକି ପ୍ରଶ୍ନକଲେ, ପାଟ ହାତୀକୁ ଉତ୍ତମ ରୂପେ ଶିକ୍ଷା ଦେଇଛତ ?

ମାହୁନ୍ତ ଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ, ମହାରାଜ ! ମୁଁ ଶ୍ୱେତ ହସ୍ତୀକୁ ଯାବତୀୟ ଶିକ୍ଷା ପ୍ରଦାନ କରିଛି । ତାକୁ ପାଟହସ୍ତୀ ହେବାର ଯୋଗ୍ୟତା ପ୍ରଦାନ କରିଛି ।

ରାଜା କହିଲେ, ଏ ହସ୍ତୀକୁ ଦେଖିଲେ ମନେ ହେଉଛି, ସେ ଖୁବ୍ ଉଦ୍ଧତ । ତୁମର ମତ କଣ ?

ମାହୁନ୍ତ ଦୃଢ଼ କଣ୍ଠରେ ପ୍ରକାଶ କଲା, ମହାରାଜ ! ଏ ହସ୍ତୀ ଆଦୌ ଉଦ୍ଧତ ନୁହେଁ । ବରଂ ଏ ହସ୍ତୀ ଶାନ୍ତ ସରଳ ଓ ଅମାୟିକ । ହସ୍ତୀ ଉଦ୍ଧତ ବୋଲି କେଉଁସି ଖଳ ପ୍ରକୃତିର ଲୋକ ଆପଣଙ୍କୁ ଜଣାଇଥିବ ।

ରାଜା କହିଲେ, ଠିକ୍ ଅଛି । ତେବେ ମୁଁ ଏ ହସ୍ତୀକୁ ପରୀକ୍ଷା କରି ଦେଖିବାକୁ ଚାହେଁ । ତାକୁ ପାହାଡ଼ ଚଢ଼ିବା କୌଶଳ ଶିଖାଇଛତ ?

ହଁ ମହାରାଜ ! ଏ ହସ୍ତୀ ପାହାଡ଼ ଚଢ଼ିପାରିବ ।

ତା' ପରେ ରାଜାଙ୍କ ଆଜ୍ଞାରେ ମାହୁନ୍ତ ପାଟହସ୍ତୀକୁ ପାହାଡ଼ ଉପରକୁ ଚଢ଼ାଇନେଲା ।

ରାଜା ତାଙ୍କର ପାତ୍ରମନ୍ତ୍ରୀମାନଙ୍କ ସଙ୍ଗରେ ଯାଇ ପାହାଡ଼ ଉପରେ ଉପସ୍ଥିତ ହେଲେ । ପାହାଡ଼ର ଶୀର୍ଷ ଦେଶରେ ସେ ଉକ୍ତ ହସ୍ତୀକୁ ତିନି ଗୋଡ଼ରେ ଛିଡ଼ା କରିବାକୁ କହିଲେ ।

ମାହୁନ୍ତର ଆଦେଶ ପାଇ ହାତୀ କେବଳ ତିନି ଗୋଡ଼ରେ ଛିଡ଼ାହେଲା ।
ମାହୁନ୍ତର ଆଦେଶ ପାଇ ହାତୀ କେବଳ ଆଗ ଗୋଡ଼ ଦୁଇଟିରେ ଛିଡ଼ାହେଲା ।

ଏହିପରି ଭାବରେ ରାଜାଙ୍କ ଆଦେଶ ପାଇ ମାହୁନ୍ତ ପାଟହସ୍ତୀକୁ କେବଳ ପଛ ଗୋଡ଼ ଦୁଇଟିରେ ଛିଡ଼ା କରାଇଲା ।

ତାପରେ ରାଜା ଉକ୍ତ ହସ୍ତୀକୁ କେବଳ ଗୋଟିଏ ଗୋଡ଼ରେ ଛିଡ଼ା କରାଇବାକୁ କହିଲେ ।

ଅନେକ କଷ୍ଟ ସ୍ୱୀକାର କରି ପାଟହସ୍ତୀ ପାହାଡ଼ର ଶିଖର ଦେଶରେ ଗୋଟିଏ ଗୋଡ଼ରେ ଛିଡ଼ାହେଲା । ପାହାଡ଼ର ଶିଖର ଦେଶ ଅତ୍ୟନ୍ତ ସଂକୀର୍ଣ୍ଣ ଥିଲା । ସାମାନ୍ୟ ବିଚ୍ୟୁତି ଦେଖା ଦେଇଥିଲେ, ହସ୍ତୀ ରସାତଳକୁ ଅନ୍ତର୍ଦ୍ଧାନ ହୋଇ ପଡ଼ିଥାନ୍ତା । ଫଳରେ ଜୀବନ ବଂଚିବା ସମ୍ଭବ ହୋଇ ନଥାନ୍ତା । ହାତୀର କଷ୍ଟ ହେଲେ ଅନିଷ୍ଟ ହେବା ନ ଦେଖି ଉପସ୍ଥିତ ଲୋକମାନେ ଆଶ୍ଚର୍ଯ୍ୟ ହେଲେ । ସେମାନେ ପାଟହସ୍ତୀ ଓ ମାହୁନ୍ତକୁ ଧନ୍ୟ ଧନ୍ୟ କଲେ ।

କିନ୍ତୁ ରାଜାଙ୍କ ଉଦ୍ଦେଶ୍ୟ ସଫଳ ହେବା ନ ଦେଖି ସେ ମନେ ମନେ ଚିନ୍ତିତ ହେଲେ । ଏହାପରେ ରାଜା ମାହୁନ୍ତକୁ ଡାକି କହିଲେ, ଏସବୁ ତାଲିମ୍ ସବୁ ହସ୍ତୀ ଶିଖି ଥାଆନ୍ତି । ମୁଁ ବର୍ତ୍ତମାନ ଆଉ ଏକ ପରୀକ୍ଷା ନେବାକୁ ଚାହୁଁଛି ।

ଆଦେଶ କରନ୍ତୁ ମହାରାଜ ! ମାହୁନ୍ତ ପ୍ରକାଶ କଲା ।

ହସ୍ତୀକୁ ଶୂନ୍ୟମାର୍ଗରେ ଚଲାଅ । ଏହା ମୋର ଶେଷ ଆଦେଶ । ରାଜା କହିଲେ ।

ଏପରି ଅଦ୍ଭୁତ ଆଦେଶ ପାଇ ମାହୁନ୍ତ ରାଜାଙ୍କ ଉଦ୍ଦେଶ୍ୟ ବୁଝିପାରିଲା ଓ ସେ ହସ୍ତୀର କାନ ପାଖରେ କହିଲା, ହେ ମୋର ପ୍ରିୟ ଶ୍ୱେତହସ୍ତୀ

ରାଜାଙ୍କ ଅଭିପ୍ରାୟ ହେଲ; ତୋର ବିନାଶ ସାଧନ । ତେବେ ତୋର ଅଲୌକିକ ଶକ୍ତି ଉପରେ ମୋର ବିଶ୍ୱାସ ରହିଛି । ତୁ ଯେ ଶୂନ୍ୟମାର୍ଗରେ ଗତିକରି ପାରିବୁ, ତାହା ମୁଁ ଜାଣେ । ବର୍ତ୍ତମାନ ତୁ ତୋର ଅଲୌକିକ କର୍ମ ସମ୍ପାଦନ କର ।

ମାହୁନ୍ତର ନିର୍ଦ୍ଦେଶ ପାଇବାମାତ୍ରେ ଶ୍ୱେତ ବର୍ଣ୍ଣର ପାଟହସ୍ତୀ ଶୂନ୍ୟ ମାର୍ଗରେ ଉଡ଼ିବାକୁ ଲଗିଲ । ଏହାଦେଖି ପାତ୍ରମନ୍ତ୍ରୀମାନେ ବିସ୍ମିତ ହେଲେ ।

ଇତ୍ୟବସରରେ ମାହୁନ୍ତ ମଗଧ ରାଜା ବିରୂପସେନଙ୍କୁ କହିଲ, ମହାରାଜ ! ଏ ହସ୍ତୀର ଅଦ୍ଭୁତ ଶକ୍ତି । ଏହାଏକ ଅସାଧାରଣ ହସ୍ତୀ ଥିଲ । ଦେବ ଅଂଶରେ ଇଏ ଜନ୍ମ ଲଭ କରିଥିଲ । ଆପଣଙ୍କ ପାଟହସ୍ତୀ ହେବା ଏହାର ଯୋଗ୍ୟ କର୍ମ ନୁହେଁ । ଆପଣ ଏହାର ବିନାଶ ସାଧନ ଉପାୟ ନିର୍ଦ୍ଧାରଣ କରି ନିଜର ମୂର୍ଖତାହିଁ ପ୍ରକାଶ କଲେ ।

ରାଜା କୌଣସି ଉତ୍ତର ନ ଦେଇ ନୀରବରେ ନଅରକୁ ଫେରିଲେ ।

ଏହାପରେ ଶୁକ୍ଳ ହସ୍ତୀ ଆକାଶ ମାର୍ଗରେ ଉଡ଼ି ଉଡ଼ି ଯାଇ କାଶୀ ରାଜ୍ୟରେ ପହଞ୍ଚିଲ । ସେ କାଶୀ ରାଜାର ଉଦ୍ୟାନ ଆକାଶରେ ସ୍ଥିରହୋଇ ରହିଲ । ଏହା ଦେଖି ନଗରବାସୀମାନେ ଆନନ୍ଦରେ କୋଳାହଳ କରିବାକୁ ଲଗିଲେ । କାଶୀ ରାଜା ଏ ସମ୍ବାଦ ପାଇ ଉଦ୍ୟାନକୁ ଆସିଲେ । ସେ ହାତ ଯୋଡ଼ି ଜଣାଇଲେ, ହେ ଶ୍ୱେତହସ୍ତୀ, ତୁମର ଆବିର୍ଭାବରେ କାଶୀରାଜ୍ୟ ପବିତ୍ର ହେଲ । ତୁମକୁ ମର୍ତ୍ତ୍ୟାବତରଣ କରିବାକୁ ପ୍ରାର୍ଥନାକରୁଛି ।

କାଶୀ ରାଜାଙ୍କ ପ୍ରାର୍ଥନା ଶୁଣି ଶ୍ୱେତହସ୍ତୀ ତାଙ୍କ ରାଜ୍ୟରେ ପଦାର୍ପଣ କଲେ । ଶ୍ୱେତହସ୍ତୀର ମାହୁନ୍ତ ଆସି କାଶୀ ରାଜାଙ୍କ ଆଗରେ ଶ୍ୱେତହସ୍ତୀର ସମସ୍ତ ସମ୍ବାଦ ଜଣାଇଲେ ।

ଏହାପରେ ରାଜା ଶ୍ୱେତହସ୍ତୀକୁ ସୁନ୍ଦର ଭାବରେ ସଜାଇ ହସ୍ତୀଶାଳା ମଧ୍ୟରେ ରଖିଲେ । ନିଜ ରାଜ୍ୟକୁ ତିନିଭାଗ କରି ଗୋଟିଏ ଭାଗ ହସ୍ତୀକୁ, ଅନ୍ୟଭାଗ ମାହୁନ୍ତକୁ ଓ ତୃତୀୟ ଭାଗ ନିଜ ପାଇଁ ରଖିଲେ ।

ଶ୍ୱେତହସ୍ତୀ ରୂପୀ ବୋଧିସତ୍ତ୍ୱ କାଶୀ ରାଜ୍ୟରେ ଅବସ୍ଥାନ କରିବା ପରେ କାଶୀ ରାଜ୍ୟର ସୁଖସମ୍ପଦ ବଢ଼ିବାକୁ ଲାଗିଲା । ପ୍ରଜାମାନେ ସୁଖରେ ବାସ କଲେ । ରାଜାଙ୍କ ଖ୍ୟାତି ଚତୁର୍ଦ୍ଦିଗରେ ବିସ୍ତାର ଲାଭକଲା ।



# ଅପାତ୍ରରେ ଦାନ

ଯେତେବେଳେ ବୋଧିସତ୍ତ୍ୱ ମଗଧ ରାଜାଙ୍କର କୋଷାଧ୍ୟକ୍ଷ ଥିଲେ । ତାଙ୍କର ନିଜସ୍ୱ ସମ୍ପତ୍ତିର ମୂଲ୍ୟ ପ୍ରାୟ ଅଶୀକୋଟି ସ୍ୱର୍ଣ୍ଣମୁଦ୍ରା ଥିଲା । ସେ ରାଜାଙ୍କ ରାଜକୋଷର ଆୟ ବ୍ୟୟର ହିସାବ ରଖୁଥିଲେ ।

ସେହି ସମୟରେ କାଶୀ ରାଜ୍ୟରେ ଶ୍ରୀବତ୍ସ ନାମରେ ଜଣେ ଧନୀଲୋକ ବାସ କରୁଥିଲେ । ସେ ବୋଧିସତ୍ତ୍ୱଙ୍କ ଅପେକ୍ଷା ଅଧିକ ଧନୀଥିଲେ । ତାଙ୍କର ଧନ ସମ୍ପଦର ମୂଲ୍ୟ ଅଶୀକୋଟି ସ୍ୱର୍ଣ୍ଣମୁଦ୍ରାଠାରୁ ବେଶୀ ଥିଲା । ବୋଧିସତ୍ତ୍ୱ ଓ ଶ୍ରୀବତ୍ସ ବାଲ୍ୟ ବନ୍ଧୁ ଥିଲେ ।

ଶ୍ରୀବତ୍ସଙ୍କ ଜୀବନରେ ଦୁର୍ଦ୍ଦିନ ଆସି ଉପସ୍ଥିତ ହେଲା । ସେ ତାଙ୍କର ସମସ୍ତ ଧନ ସମ୍ପଦ ହରାଇ ବସିଲେ ଓ ଖୁବ ଗରିବ ହୋଇଗଲେ । ଏହି ସମୟରେ ତାଙ୍କର ବୋଧିସତ୍ତ୍ୱଙ୍କ କଥା ମନେ ପଡ଼ିଲା । ଅନ୍ୟ ଉପାୟ କିଛି ନ ଦେଖି ସେ ନିଜ ପତ୍ନୀଙ୍କୁ ସଙ୍ଗରେ ନେଇ ମଗଧ ରାଜ୍ୟରେ ପହଞ୍ଚିଲେ ଓ ବୋଧିସତ୍ତ୍ୱଙ୍କୁ ଦେଖାକଲେ ।

ଅନେକ ଦିନ ପରେ ବନ୍ଧୁ ଶ୍ରୀବତ୍ସଙ୍କୁ ଦେଖି ବୋଧିସତ୍ତ୍ୱ ଖୁବ୍ ଖୁସି ହେଲେ । ସେ ଶ୍ରୀବତ୍ସ ଓ ତାଙ୍କ ସ୍ତ୍ରୀଙ୍କୁ ପାଖେଇ ନେଇ ଘରେ ରଖିଲେ ଓ ତାଙ୍କ କୁଶଳ ପ୍ରଶ୍ନ କଲେ । ଶ୍ରୀବତ୍ସ ବୋଧିସତ୍ତ୍ୱଙ୍କ ଆଗରେ ନିଜର ଦୁର୍ଦ୍ଦିନ କଥା ଜଣାଇ ସାହାଯ୍ୟ ଆଶାରେ ତାଙ୍କ ମୁହଁକୁ ଅନେଇ ରହିଲେ ।

ବୋଧିସତ୍ତ୍ୱ ଶ୍ରୀବତ୍ସଙ୍କୁ ଆଶ୍ୱାସନା ଦେଇ କହିଲେ ପ୍ରିୟ ବନ୍ଧୁ, ଚିନ୍ତା କରନାହିଁ । ବିପଦରେ ପଡ଼ି ସାହାଯ୍ୟ ଆଶାରେ ତୁମେ ଠିକ ଜାଗାରେ ହିଁ ପହଞ୍ଚିଛ । ବିପଦ ବେଳେ ବନ୍ଧୁ ବନ୍ଧୁଙ୍କୁ ସାହାଯ୍ୟ କରିବା ଉଚିତ । ଏହା କହି ସେ ତାଙ୍କର ସମସ୍ତ ସମ୍ପତ୍ତିକୁ ଦୁଇଭାଗ କରି, ଗୋଟିଏ ଭାଗ ଶ୍ରୀବତ୍ସଙ୍କୁ ଦାନ କଲେ । ତାପରେ ଶ୍ରୀବତ୍ସଙ୍କ ସଙ୍ଗରେ ନିଜର କେତେଜଣ ପରିଚାଳକଙ୍କୁ ଦେଇ କାଶୀରାଜ୍ୟକୁ ପଠାଇ ଦେଲେ ।

ଏହାପରେ ଅନେକ ବର୍ଷ ବିତିଗଲା ।

ଥରେ ମଗଧ ରାଜ୍ୟରେ ଅରାଜକତା ଦେଖାଦେଲା । ବୋଧିସତ୍ତ୍ୱଙ୍କ ଗୃହକାର୍ଯ୍ୟ ଓ ସମ୍ପତ୍ତି ସବୁ ଚାଲିଗଲା । ସେ ନିଃସ୍ୱ ହୋଇପଡ଼ିଲେ । ଏହି ସମୟରେ ଶ୍ରୀବତ୍ସଙ୍କ କଥା ମନେ ପଡ଼ିବାରୁ, ସେ ନିଜ ପତ୍ନୀଙ୍କୁ ସଙ୍ଗରେ ନେଇ କାଶୀ ଅଭିମୁଖେ ଯାତ୍ରା କଲେ । ପତିପତ୍ନୀ ଉଭୟେ କାଶୀରେ ଚାଲି ଚାଲି ଯାଇ ପହଞ୍ଚିଲେ । ବୋଧିସତ୍ତ୍ୱ ତାଙ୍କ ପତ୍ନୀଙ୍କୁ ଏକ ନିକେତନେ ବସାଇ ଦେଇ କହିଲେ, "ତୁମେ ଏଇଠି ଅପେକ୍ଷା କରିଥାଅ । ମୁଁ ଶ୍ରୀବତ୍ସ ପାଖକୁ ଯାଉଛି । ଶ୍ରୀବତ୍ସ ଖବର ପାଇଲେ ସବାରୀ ଓ ଦାସୀ ପଠାଇ ଏଠାରୁ ତୁମକୁ ନେଇଯିବେ" । ଏହାକହି ବୋଧିସତ୍ତ୍ୱ କାଶୀ ସହର ଭିତରେ ପଶିଲେ ।

କିଛି ସମୟପରେ ଶ୍ରୀବତ୍ସଙ୍କ ଘରର ଠିକଣା ପଚାରି ସେ ତାଙ୍କ ଘରେ ପହଞ୍ଚିଲେ । ସେଇଠି ପ୍ରହରୀକୁ ନିଜର ପରିଚୟ ଦେବାରୁ ସେ ବୋଧିସତ୍ତ୍ୱଙ୍କୁ ଘର ଭିତରକୁ ଛାଡ଼ିଦେଲା ।

ବୋଧିସତ୍ତ୍ୱ ଭାବିଥିଲେ ବନ୍ଧୁ ଶ୍ରୀବତ୍ସଙ୍କ ସାଙ୍ଗରେ ଦେଖାହେଲେ, ସେ ପୂର୍ବକଥା ସ୍ମରଣ କରି ତାଙ୍କୁ ସାହାଯ୍ୟ କରିବେ । କିନ୍ତୁ ତାହା ହେଲା ନାହିଁ । ଶ୍ରୀବତ୍ସ ବୋଧିସତ୍ତ୍ୱଙ୍କୁ ଦେଖି କୌଣସି ଆଗ୍ରହ ପ୍ରକାଶ କଲେ

ନାହିଁ । ତାଙ୍କର ଆପାଦମସ୍ତକ ନିରୀକ୍ଷଣ କରି ଶ୍ରୀବତ୍ସ କହିଲେ, ମୋଠାରେ ତୁମର କି କାମ ଅଛି ? କେଉଁଠି ଆସି ରହିଛ ?

ଶ୍ରୀବତ୍ସଙ୍କ ଭାବଭଙ୍ଗୀ ଦେଖି ବୋଧିସତ୍ତ୍ୱ ସବୁକଥା ବୁଝିଗଲେ । ତଥାପି ବ୍ୟସ୍ତ ନହୋଇ କହିଲେ, ମୁଁ ବଡ଼ ଦୁଃଖରେ ପଡ଼ିଛି । ଦୁଃଖରେ ପଡ଼ି ତୁମକୁ ଦେଖା କରିବାକୁ ଆସିଥିଲି । ମୋ ସ୍ତ୍ରୀ ବୃକ୍ଷମୂଳେ ବସିଛି । ତାକୁ ମୁଁ ଛାଡ଼ିଦେଇ ତୁମ ପାଖକୁ ଆସିଛି । ଆମେ ଏଇଠି କେଉଁଠି ରହିବୁ ଠିକ କରିନାହୁଁ ।

ଶ୍ରୀବତ୍ସ ଗମ୍ଭୀର ହୋଇ କହିଲେ, ତୁମକଥା ବୁଝିଲି । କିନ୍ତୁ ଏଠାରେ ରହିବା ପାଇଁ ଜାଗା ନାହିଁ । ମୁଁ କିଛି ଚାଉଳ ଦେଉଛି ନେଇଯାଅ । ରାନ୍ଧିବାଢ଼ି କରି ଖାଇବ ।

ଏହାପରେ ଶ୍ରୀବତ୍ସଙ୍କ ଆଦେଶକ୍ରମେ ଜଣେ ଲୋକ କିଛି ଚାଉଳ ଆଣି ବୋଧିସତ୍ତ୍ୱଙ୍କ ଅଣ୍ଟିରେ ପକାଇ ଦେଇ ଗଲା । ସେହି ଚାଉଳ ନେଇ ବୋଧିସତ୍ତ୍ୱ ନୀରବରେ ନିଜ ପତ୍ନୀଙ୍କ ପାଖକୁ ଫେରିଗଲେ ।

ବୋଧିସତ୍ତ୍ୱଙ୍କୁ ଦେଖି ତାଙ୍କର ସ୍ତ୍ରୀ ଆଶାପୂର୍ଣ୍ଣ କଣ୍ଠରେ ପ୍ରଶ୍ନ କଲେ, ତୁମର ବନ୍ଧୁ ତୁମକୁ କିପ୍ରକାର ସାହାଯ୍ୟ କଲେ କୁହ !

ବୋଧିସତ୍ତ୍ୱ ଦୁଃଖଭରା କଣ୍ଠରେ କହିଲେ, ବନ୍ଧୁ ଦୟାକରି କିଛି ଭିକ୍ଷା ଦେଲେ ସତ, କିନ୍ତୁ ମୋର ହୃଦୟକୁ ଚୂରମାର କରିପକାଇଲେ । ସେ ମୋତେ ଭିକାରୀ ପରି ଚାଉଳ କିଛି ଦାନ କଲେ ।

ବୋଧିସତ୍ତ୍ୱଙ୍କ ପତ୍ନୀ ଏକଥା ଶୁଣି କ୍ରୋଧ ପ୍ରକାଶ କରି କହିଲେ, ତୁମେ ଏ ଭିକ୍ଷା ଗ୍ରହଣ କରୁଥିଲ କାହିଁକି ? ଚାଳିଶ କୋଟି ସ୍ୱର୍ଣ୍ଣମୁଦ୍ରାର ପ୍ରତିଦାନ କଣ ଏଇ ଚାଉଳ ଚିଣ୍ଡାକ ?

ପତ୍ନୀଙ୍କୁ ସାନ୍ତ୍ୱନା ଦେଇ ବୋଧିସତ୍ତ୍ୱ ଶାନ୍ତ କଣ୍ଠରେ କହିଲେ, ଭିକ୍ଷା ଗ୍ରହଣ କରି ନ ଥିଲେ ଶତ୍ରୁତା ବଢିଥାନ୍ତା । ଯାହା ହେଲେ ବି, ମିତ୍ର ମିତ୍ର ମଧ୍ୟରେ ଶତ୍ରୁତାଚରଣକୁ ପ୍ରଶ୍ରୟ ନ ଦେବା ପାଇଁ ମୁଁ ଏ ଭିକ୍ଷା ଗ୍ରହଣ କଲି ।

ପତି ଓ ପତ୍ନୀ ଏହିପରି କଥାବାର୍ତ୍ତା କଲାବେଳେ ଜଣେ ଲୋକ ଆସି ଘଟଣା ସ୍ଥଳରେ ପହଞ୍ଚିଲା । ସେ ଥିଲା ଶ୍ରୀବତ୍ସଙ୍କର ପରିଚାଳକ । ଶ୍ରୀବତ୍ସଙ୍କର ପରିଚାଳକ ହେବା ପୂର୍ବରୁ ସେ ବୋଧିସତ୍ତ୍ୱଙ୍କ ନିକଟରେ ଥିଲା । ପରିଚାଳକ ଜଣକ ତାର ପୂର୍ବ ମାଲିକ ବୋଧିସତ୍ତ୍ୱଙ୍କୁ ଚନ୍ହିପାରି ସାଷ୍ଟାଙ୍ଗ ପ୍ରଣିପାତ କଲା । ତା'ପରେ ତାଙ୍କର କୁଶଳ ଜିଜ୍ଞାସା କଲା ।

ବୋଧିସତ୍ତ୍ୱ ଏହି ଅନୁରକ୍ତ ପରିଚାଳକ ନିକଟରେ ତାଙ୍କ ଜୀବନରେ ସମସ୍ତ ଘଟଣା ପ୍ରକାଶ କଲେ । ବୋଧିସତ୍ତ୍ୱଙ୍କ ଦୁର୍ଯୋଗ କଥା ଶୁଣି ପରିଚାଳକ ଦୁଃଖ ପ୍ରକାଶ କଲା ଓ ତାର ପୂର୍ବତନ ମାଲିକ ଓ ପ୍ରଭୁପତ୍ନୀଙ୍କୁ ନିଜ ଘରକୁ ଡାକି ଆଣିଲା । ସେ ଦୁହିଁଙ୍କୁ ଖୁଆଇ ପିଆଇ ରହିବାର ସୁବିଧା କରିଦେଲା । ତା'ପରେ ଅନ୍ୟାନ୍ୟ ପୂର୍ବତନ ପରିଚାଳକ ମାନଙ୍କୁ ବୋଧିସତ୍ତ୍ୱଙ୍କ ସମ୍ବାଦ ଦେଲା ।

ସମସ୍ତେ ଶ୍ରୀବତ୍ସଙ୍କ ମିତ୍ରଦ୍ରୋହ କଥା ଜାଣି ପାରିଲେ । କାଶୀ ରାଜ୍ୟରେ ଶ୍ରୀବତ୍ସଙ୍କ କୁତ୍ସାରଟନା ହେଲା । ଶେଷରେ ଶ୍ରୀବତ୍ସଙ୍କ ମିତ୍ରଦ୍ରୋହ କଥା କାଶୀ ରାଜାଙ୍କ କାନରେ ପଡ଼ିଲା ।

କାଶୀରାଜା ଦିନେ ବୋଧିସତ୍ତ୍ୱଙ୍କୁ ପାଖକୁ ଡକାଇ ସବୁକଥା ପଚାରିଲେ । ବୋଧିସତ୍ତ୍ୱ କାଶୀରାଜାଙ୍କ ଆଗରେ ନିଜ ଜୀବନରେ ସବୁ ଘଟଣା ଜଣାଇ ଦେଲେ । ସେହି ଦିନହିଁ ସେ ଶ୍ରୀବତ୍ସଙ୍କୁ ଡକାଇ ପ୍ରଶ୍ନକଲେ, ଏ କଥା କଣ ସତ ଯେ, ତୁମେ ଏହି ଭଦ୍ର ଲୋକଙ୍କ ପାଖରୁ ଧନ ଆଣି ଧନୀ ହୋଇଛ ?

ଶ୍ରୀବତ୍ସ ରାଜାଙ୍କ ଆଗରେ ସତ କଥା ଲୁଗୁଇବାକୁ ସାହାସ କଲେ ନାହିଁ । ସେ ତଳକୁ ମୁହଁ କରି ଉତ୍ତର କହିଲେ, ହଁ ମହାରାଜ ! ମୁଁ ତାଙ୍କରି ଧନରେ ଧନୀ ହୋଇଛନ୍ତି ।

ରାଜା କହିଲେ, ତୁମର ବନ୍ଧୁ ବିପଦରେ ପଡ଼ି ତୁମର ସାହାଯ୍ୟ ଲାଭ ଆଶାରେ ଆସିଥିଲେ । ତାଙ୍କୁ ଆର୍ଥିକ ସହାୟତା ପରିବର୍ତ୍ତେ ଅପମାନିତ କଲ । ତେଣୁ ତୁମର ସମସ୍ତ ଧନ ସମ୍ପଦ ବ୍ୟାଜାପ୍ତ କରାଯାଇ ବୋଧିସତ୍ତ୍ୱଙ୍କ ହସ୍ତରେ ଅର୍ପଣ କରାଯିବ ।

କାଶୀରାଜାଙ୍କ ବିଚାର ଶୁଣି ବୋଧିସତ୍ତ୍ୱ ତାଙ୍କୁ ହାତଯୋଡ଼ି କହିଲେ, ମହାରାଜ ! ମୁଁ ଅନ୍ୟର ଧନ ଗ୍ରହଣ କରିବାକୁ ଚାହେଁ ନାହିଁ । ଅଳ୍ପକିଛି ଆର୍ଥିକ ସାହାଯ୍ୟ ଚାହୁଁଛି । ସେତକ ହେଲେ ବିପଦରୁ ଉଦ୍ଧାର ମିଳିଯିବ ।

ରାଜା ବୋଧିସତ୍ତ୍ୱଙ୍କ ନିବେଦନ ରକ୍ଷା କଲେ । ସେ ଶ୍ରୀବତ୍ସଙ୍କ ଠାରୁ ଚାଳିଶ କୋଟି ସ୍ୱର୍ଣ୍ଣମୁଦ୍ରା ଆଣି ବୋଧିସତ୍ତ୍ୱଙ୍କୁ ଦେଇ କହିଲେ, "ଦାନ କରିବା ପୁଣ୍ୟ କଥା । କିନ୍ତୁ ଅପାତ୍ରରେ ଦାନ କରିବା ବିଧେୟ ନୁହେଁ ।

ବୋଧିସତ୍ତ୍ୱ ରାଜାଙ୍କୁ ଧନ୍ୟବାଦ ଜଣାଇ, ଫେରି ପାଇଥିବା ଧନରେ ଅଧିକ ଧନ ଉପାର୍ଜନ କଲେ ଓ ଦାନ ଧର୍ମ କରି ସୁଖରେ କାଳ କାଟିଲେ ।



# ପ୍ରକୃତ ବନ୍ଧୁ

ବହୁବର୍ଷ ପୂର୍ବର କଥା—

ସେତେବେଳେ ରାଜା ବ୍ରହ୍ମଦତ୍ତ କାଶୀ ନଗରରେ ରାଜୁତି କରୁଥିଲେ ।

ବୋଧିସତ୍ତ୍ୱ ଜଣେ ବ୍ରାହ୍ମଣ ଘରେ ଜନ୍ମ ହୋଇଥାନ୍ତି । ସେତେବେଳେ ତାଙ୍କ ନାମ ରଖା ହୋଇଥାଏ ସତ୍ୟାନନ୍ଦ । ତାଙ୍କର ଜଣେ ସାନ ଭାଇ ମଧ୍ୟ ଥିଲେ । ସାନ ଭାଇର ନାମ ଥିଲା ନିତ୍ୟାନନ୍ଦ ।

ସତ୍ୟାନନ୍ଦ ଓ ନିତ୍ୟାନନ୍ଦ ଆନନ୍ଦରେ ବଢ଼ିବାକୁ ଲାଗିଲେ । କ୍ରମେ ପାଠଶାଳାକୁ ଯାଇ ପାଠ ପଢ଼ିଲେ । କିନ୍ତୁ ଖରାପ ଯୋଗ ଆସିବାରୁ ହଠାତ୍ ସେମାନଙ୍କ ବାପ ମା' ପ୍ରାଣତ୍ୟାଗ କଲେ । ଏଥିରେ ଦୁଇଭାଇଙ୍କ ମନ ଭାଙ୍ଗି ପଡ଼ିଲା । ସେମାନଙ୍କ ମନରେ ବୈରାଗ୍ୟ ଜାତ ହେଲା । ସେମାନେ ମନ ଦୁଃଖରେ ଘର ଛାଡ଼ି ଚାଲିଗଲେ ଓ ଗଙ୍ଗାନଦୀର ଦୁଇ କୂଳରେ ଦୁଇଟି କୁଟୀର ନିର୍ମାଣ କରି ଅଲଗା ଅଲଗା ହୋଇ ରହିଲେ । ସେମାନେ ସନ୍ନ୍ୟାସ ଜୀବନ ଯାପନ କଲେ ।

ଦିନେ ପାତାଳର ସର୍ପରାଜ ମଣିକାନ୍ତ ମନୁଷ୍ୟ ରୂପ ଧାରଣ କରି ଗଙ୍ଗା କୂଳରେ ଯାଉଥିଲେ । ନିତ୍ୟାନନ୍ଦଙ୍କ କୁଟୀର ଉପରେ ତାଙ୍କର ଦୃଷ୍ଟି ପଡ଼ିଲା । ସେ ନିତ୍ୟାନନ୍ଦଙ୍କ ପରି ଜଣେ କିଶୋରଙ୍କୁ ସନ୍ନ୍ୟାସୀ ହୋଇ ରହିଥିବା ଦେଖି ଆଶ୍ଚର୍ଯ୍ୟ ହେଲେ । ନିତ୍ୟାନନ୍ଦଙ୍କ ପାଖକୁ ଆସି ସର୍ପରାଜ ମଣିକାନ୍ତ ନିଜର ପ୍ରକୃତ ପରିଚୟ ଦେଲେ ଓ ତାଙ୍କ ପାଖରେ ବସି ବହୁ ସମୟ କଥାବାର୍ତ୍ତା କଲେ । ତା'ପରେ ସେ ବିଦାୟ ନେଇ ଚାଲିଗଲେ ।

କିନ୍ତୁ ପରଦିନ ପୁଣିଥରେ ମଣିକାନ୍ତ ନିତ୍ୟାନନ୍ଦଙ୍କ ପାଖରେ ପହଞ୍ଚିଲେ ।

ଏହିପରି ଭାବରେ ସର୍ପରାଜ ମଣିକାନ୍ତ ସଙ୍ଗେ ସାନଭାଇ ନିତ୍ୟାନନ୍ଦର ବନ୍ଧୁତା ହେଲା । ମଣିକାନ୍ତ ପ୍ରତିଦିନ ଆସିବାକୁ ଲାଗିଲେ । କେବେକେବେ

ନିଜରୂପ ଧାରଣ କରି ନିତ୍ୟାନନ୍ଦ ଶୋଇଥିଲା ବେଳେ ତା'ଉପରେ ଫଣା ଟେକି, ତାଙ୍କୁ ଆନନ୍ଦ ପ୍ରଦାନ କଲେ ।

ନିତ୍ୟାନନ୍ଦ ଏହା ଦେଖି ନିଜକୁ ଗୌରବାନ୍ୱିତ ମନେ କଲେ । ଭାବିଲେ, ପାତାଳ ପୁରର ଜଣେ ବାସିନ୍ଦା ସଙ୍ଗରେ ବନ୍ଧୁତା ବାନ୍ଧିବା କମ୍ କଥା ନୁହେଁ ।

ଏହିପରି ଭାବରେ କିଛିଦିନ ଅତିବାହିତ ହେଲା । କିନ୍ତୁ ହଠାତ୍ ଦିନେ ନିତ୍ୟାନନ୍ଦଙ୍କ ମନରେ ଏକ ଚିନ୍ତା ପଡ଼ିଲା । ସେ ଭାବିଲେ, ଯେତେ-ହେଲେ ମଣିକାନ୍ତ ମଣିଷ ନୁହନ୍ତି । ସେ ଏକ ସର୍ପ ଦେବତା । ଦେବତାଙ୍କ ସଙ୍ଗରେ ମଣିଷର ବନ୍ଧୁତା ଭଲ ନୁହେଁ । ଯଦି ସର୍ପଦେବତା ମଣିକାନ୍ତ ତାଙ୍କ ଉପରେ କୌଣସି କାରଣରୁ ରୁଷ୍ଟ ହୁଅନ୍ତି, ସେ ଅଭିଶାପ ଦେଇ ପାରନ୍ତି । ପୁଣି ଦେବତାମାନେ ମାୟାବୀ ଓ ସେ ନିଜେ ସନ୍ନ୍ୟାସୀ । ସନ୍ନ୍ୟାସୀ ମାୟାବୀର ମାୟାରେ ପଡ଼ିବା ଭଲ ନୁହେଁ ।

କ୍ରମେ ଏହି ନୂତନ ଚିନ୍ତା ସାନଭ୍ରାଇ ନିତ୍ୟାନନ୍ଦଙ୍କୁ ଅଥୟ କଲା । କିନ୍ତୁ ମଣିକାନ୍ତଙ୍କ ସହିତ ସହଜରେ ସେ ସମ୍ପର୍କ ତୁଟାଇ ପାରୁ ନଥାନ୍ତି । ତେଣୁ ଏ ପ୍ରକାର ସମ୍ପର୍କ ଯୋଗୁ ତାଙ୍କ ମନରେ ଶାନ୍ତି ନଥାଏ । ଏହିପରି ଦୁଶ୍ଚିନ୍ତାରେ ପଡ଼ି ତାଙ୍କ ସ୍ୱାସ୍ଥ୍ୟ ଖରାପ ହେଲା ।

ମଣିକାନ୍ତଙ୍କ ମନରେ କୌଣସି ଦ୍ୱିଧା ନଥାଏ । ସେ ପ୍ରାୟ ପ୍ରତିଦିନ ନିତ୍ୟାନନ୍ଦ ପାଖକୁ ଆସୁଥାନ୍ତି । ନିତ୍ୟାନନ୍ଦ ମୁହଁରୁ ମଣିଷମାନଙ୍କ କଥା ଶୁଣି ଆନନ୍ଦ ଲାଭ କରୁଥାନ୍ତି । ନିତ୍ୟାନନ୍ଦ ଯେ ତାଙ୍କ ପାଇଁ ଦୁଃଖିତ, ଏକଥା ବୁଝିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନଥାଏ ।

ଏପରି ଅବସ୍ଥାରେ ପଡ଼ି ଦିନେ ନିତ୍ୟାନନ୍ଦ ନଈ ପାରି ହୋଇ ବଡ଼ଭାଇ ସତ୍ୟାନନ୍ଦଙ୍କୁ ଦେଖାକଲେ । ନିତ୍ୟାନନ୍ଦଙ୍କ ବିଷାଦ ଭରା ମୁହଁ ଦେଖି ସେ ଚମକି ପଡ଼ିଲେ ଓ ତାର କାରଣ ପଚାରିଲେ ।

ନିତ୍ୟାନନ୍ଦ ବଡ଼ଭାଇ ସତ୍ୟାନନ୍ଦ ଆଗରେ ନିଜର ସମସ୍ୟା କଥା ଜଣାଇଲେ ।

ସବୁ ଶୁଣିବା ପରେ ସତ୍ୟାନନ୍ଦ କହିଲେ, ଏଭଳି କ୍ଷେତ୍ରରେ ମନର କଥା ମନ ଭିତରେ ନ ଲୁଚାଇ ସବୁ କଥା ପ୍ରକାଶ କରିଦେବା ଉଚିତ । ପ୍ରଥମେ କୁହ, ମଣିକାନ୍ତ ତୁମକୁ ଦେଖା କରିବାକୁ ନ ଆସିଲେ ତୁମେ ସୁଖୀ ହେବ କି ?

ନିତ୍ୟାନନ୍ଦ କହିଲେ, ମଣିକାନ୍ତ ମୋ ପାଖକୁ ନଆସୁ, ଏହା ମୁଁ ଚାହୁଁଛି । ସେ ନଆସିଲେ ମୁଁ ସୁଖୀ ହେବି ।

ସତ୍ୟାନନ୍ଦ କହିଲେ, ସର୍ପରାଜ ମଣିକାନ୍ତର ମସ୍ତକରେ ନିଶ୍ଚୟ ଏକ ମଣି ଥିବ । ସେ ତୁମ ପାଖକୁ ଆସିଲେ, ତୁମେ ତାଙ୍କୁ ସେ ମଣିଟି ମାଗିବ । ତା'ପରେ କଣ ହେଉଛି ଦେଖ ।

ନିତ୍ୟାନନ୍ଦ ବଡ଼ଭାଇ ପାଖରୁ ଏ ପରାମର୍ଶ ଗ୍ରହଣ କରି ନିଜ କୁଟୀରକୁ ଫେରିଲେ । ଦୁଇଦିନ ପରେ ମଣିକାନ୍ତ ଯେତେବେଳେ ଦେଖା କରିବାକୁ ଆସିଲେ, ନିତ୍ୟାନନ୍ଦ ତାଙ୍କୁ ମଣି ମାଗିଲେ ।

ନିତ୍ୟାନନ୍ଦ ମଣି ମାଗୁଥିବା ଦେଖି ମଣିକାନ୍ତଙ୍କ ମୁହଁ ଶୁଖିଗଲା । ସେ ସବୁଦିନ ପରି ବେଶୀ ସମୟ ଅଟକି ଆଉ କଥାବାର୍ତ୍ତା କଲେ ନାହିଁ । ଶୀଘ୍ର ବିଦାୟ ନେଇ ଚାଲିଗଲେ । ପରଦିନ ପୁଣି ମଣିକାନ୍ତ ଆସିବାରୁ ନିତ୍ୟାନନ୍ଦ ଦ୍ୱିତୀୟଥର ପାଇଁ ମଣି ମାଗିଲେ । ମଣିକାନ୍ତ ଆଉ ନିତ୍ୟାନନ୍ଦଙ୍କ କୁଟୀର ଭିତରେ ନ ପଶି ବାହାରୁ ବାହାରୁ ଚାଲିଗଲେ । ପରଦିନ ନିତ୍ୟାନନ୍ଦ ତୃତୀୟଥର ପାଇଁ ମଣି ମାଗୁଥିବା ଦେଖି, ମଣିକାନ୍ତ କହିଲେ, ଏହା ଏକ ଅସାଧାରଣ ମଣି । ଏହାକୁ ମୁଁ ତୁମକୁ ଦେଇ ପାରିବି ନାହିଁ । ଏଥିପାଇଁ ଯଦି ମନ କଷ୍ଟ କରୁଥାଅ, ତା' ହେଲେ ଆଉ ମୁଁ ତୁମ ପାଖକୁ ଆସିବି ନାହିଁ ।

ସେତିକି ଦିନଠାରୁ ସେଠି ସର୍ପରାଜ ମଣିକାନ୍ତ ସାନଭାଇ ନିତ୍ୟାନନ୍ଦ ପାଖକୁ ଆଉ ଆସିଲେ ନାହିଁ ।

ନିତ୍ୟାନନ୍ଦ ଏଣିକି ଏକୁଟିଆ ରହିଲେ । ତାଙ୍କୁ ଏହା ବିରକ୍ତିକର ମନେହେଲା । ଭାବିଲେ, ମଣିକାନ୍ତ ଜଣେ ଉତ୍ତମ ବନ୍ଧୁ ଥିଲେ । ତାଙ୍କୁ ମଣି ମାଗି ଭୁଲ୍‌କଲି । ଏହି ଚିନ୍ତାରେ ସେ କ୍ରମେ ଅବସନ୍ନ ହୋଇ ପଡ଼ିଲେ ।

ଏହିପରି ଅବସ୍ଥାରେ ଦିନେ ବଡ଼ଭାଇ ସତ୍ୟାନନ୍ଦ ସାନଭାଇ ନିତ୍ୟାନନ୍ଦଙ୍କୁ ଦେଖା କରିବାକୁ ଆସିଲେ । ନିତ୍ୟାନନ୍ଦ ଅସୁସ୍ଥ ଦେଖାଯାଉ ଥିବାରୁ ପ୍ରଶ୍ନ କଲେ, କଣ କଣ ? ମଣିକାନ୍ତ କଣ ଏବେ ମଧ୍ୟ ତୁମ ପାଖକୁ ଆସୁଛି ?

ନିତ୍ୟାନନ୍ଦ କହିଲେ, ଭାଇ ! ତୁମର ପରାମର୍ଶ ମାନି ମଣିକାନ୍ତଙ୍କୁ ବାରମ୍ବାର ମଣି ମାଗିବାରୁ ସେ ଆଉ ଆସିଲେ ନାହିଁ । ଏବେ ଭାବୁଛି, ମଣି ମାଗି ଭୁଲ୍ କଲି । ମୋର ଜଣେ ଉତ୍ତମ ବନ୍ଧୁଙ୍କୁ ହରାଇଲି । ଏଥିପାଇଁ ଦୁଃଖ ଲାଗୁଛି ।

ସତ୍ୟାନନ୍ଦ ଏହା ଶୁଣି ହସିଲେ । କହିଲେ, ତୁମର ଅସୁସ୍ଥତାର କାରଣ ମଣିକାନ୍ତ ନୁହେଁ, ତୁମ ମନର ଦ୍ୱନ୍ଦ୍ୱ । ସେ ପ୍ରକୃତ ବନ୍ଧୁ ନଥିଲା । ନିଜ ସ୍ୱାର୍ଥ ପାଇଁ ମଣି ଛାଡ଼ି ପାରିଲା ନାହିଁ । ନିଜ ସ୍ୱାର୍ଥରେ ବାଧା ଆସିବ ନାହିଁ ; ଅଥଚ ବନ୍ଧୁ ବୋଲାଇବ ! ଦୁନିଆରେ ଅନେକ ବନ୍ଧୁ ମିଳିବେ । ତାହା ପ୍ରକୃତ ବନ୍ଧୁତା ନୁହେଁ । ପ୍ରକୃତ ବନ୍ଧୁ ତାର ବନ୍ଧୁ ପାଇଁ ସ୍ୱାର୍ଥ ତ୍ୟାଗ କରିଥାଏ ।

ସତ୍ୟାନନ୍ଦ ସାନଭାଇକୁ ବୁଝାଇ କହିଲେ, ନିତ୍ୟାନନ୍ଦ ! ଚିନ୍ତିତ ହୁଅ ନାହିଁ । ଆମର ଅସଲ ଲକ୍ଷ୍ୟ ଈଶ୍ୱର ପ୍ରାପ୍ତି । ତାଙ୍କଠାରେ ମନ ଲଗାଅ ।

ଏଥର ନିତ୍ୟାନନ୍ଦର ମୋହ ଭଙ୍ଗ ହେଲା । ସେ ନିଜ କୁଟୀରକୁ ଫେରିଲେ ଓ ମଣିକାନ୍ତ କଥା ମନରୁ ପୋଛି ଦେଲେ । ଏଣିକି ତାଙ୍କ ମନରେ ଗ୍ଲାନି ରହିଲା ନାହିଁ । ସେ ସୁସ୍ଥ ହେଲେ ।

———

ଭାରତ ପ୍ରଦୀପ ଗ୍ରନ୍ଥମାଳାର
ପ୍ରଥମ ଦଶଜଣ ମହାପୁରୁଷ



ସମାପ୍ତ